# ଚୟନିକା

## ୨

ମୁଖ୍ୟ ସମ୍ପାଦକ

**ଶ୍ରୀ ସୁରେନ୍ଦ୍ର ମହାନ୍ତି**

ସମ୍ପାଦକ

**ଡକ୍‌ଟର ଭବଗ୍ରାହୀ ମିଶ୍ର**

ସମ୍ପାଦନା ମଣ୍ଡଳୀ

**ଡକ୍‌ଟର ନୀଳାଦ୍ରିଭୂଷଣ ହରିଚନ୍ଦନ, ଶାନ୍ତିନିକେତନ**
**ଡକ୍‌ଟର ଗଗନେନ୍ଦ୍ର ନାଥ ଦାଶ, ବ୍ରହ୍ମପୁର**
**ଡକ୍‌ଟର ପୂର୍ଣ୍ଣାନନ୍ଦ ଦାନୀ, ସମ୍ବଲପୁର**
**ଶ୍ରୀମତୀ ମନୋରମା ମହାପାତ୍ର (ବିଶ୍ୱାଳ), ଭୁବନେଶ୍ୱର**

ସହକାରୀ ସମ୍ପାଦକ : **ନିକୁଞ୍ଜ ଜେନା**

ପରିଚାଳନା ସମ୍ପାଦିକା : **ବ୍ରତତୀ ବଳ**

ସମ୍ପାଦନା କାର୍ଯ୍ୟାଳୟ :

**ଡଃ ଭବଗ୍ରାହୀ ମିଶ୍ର**
ସି-୫, ଖାରବେଳ ନଗର
ଭୁବନେଶ୍ୱର-୭୫୧ ୦୦୧
ଟେଲିଫୋନ-୫୨୬୭୨

ପ୍ରକାଶକ :

**ପ୍ରଦ୍ୟୁମ୍ନ ବଳ**
ପ୍ରଗତିବାଦୀ ପବ୍ଲିକେଶନସ
୧୩୬, ବାପୁଜୀ ନଗର
ଭୁବନେଶ୍ୱର-୭୫୧ ୦୦୯
ଟେଲିଫୋନ ୫୧୫୬୯।୫୧୮୬୩

ମୁଦ୍ରଣ :

**ସୁମୁଦ୍ରଣୀ**
ଝାଞ୍ଜିରି ମଙ୍ଗଳା
କଟକ-୭୫୩ ୦୦୯
ମୂଲ୍ୟ : **ଚାରିଟଙ୍କା**

**CHAYANIKA Vol-1 No. 2**
Publisher :
**Pradyumna Bal**
Pragativadi Publications
136, Bapuji Nagar
Bhubaneswar-751 009

Price : **Rupees Four Only**

---

(This magazine is printed on paper supplied by Government by India at a concessional rate.)

# ଲେଖା ଓ ଲେଖକ :

ପ୍ରକାଶକର କଥା.........

# ଲେଖା ସଂକଟ

'ଚୟନିକା'ର ଦ୍ୱିତୀୟ ସଂଖ୍ୟା ପ୍ରକାଶ ପାଉଛି ।

ଓଡ଼ିଶାରେ ଓଡ଼ିଆ ପତ୍ରିକା ପ୍ରକାଶ କଲେ ଖରିଦଦାର ପାଠକର ତ ନିଶ୍ଚିତ ଅଭାବ ରହିଛି । ବିଜ୍ଞାପନ ମିଳିବାର ସୁଯୋଗ ସୀମିତ ଲେଖା । ଅର୍ଥାତ ଲେଖକର ଅଭାବ ମଧ୍ୟ ରହିଛି ।

କେତେ ପ୍ରକାରର ଲେଖକ ଅଛନ୍ତି । କେତେ ଲେଖକ ଅଛନ୍ତି, ଯେଉଁମାନେ ଭଲ ଲେଖନ୍ତି ଓ କମ ଲେଖନ୍ତି, ଏବଂ ପଇସା ନ ପାଇଲେ ଲେଖନ୍ତି ନାହିଁ । କିନ୍ତୁ ସେ କଥା ଖୋଲି କରି କହନ୍ତି ନାହିଁ । ଏମାନଙ୍କ ସଂଖ୍ୟା ବୋଧହୁଏ ଏକ ଡଜନରୁ ବେଶୀ ହେବନାହିଁ ।

ଅନ୍ୟ କିସମର ଲେଖକ ବି ଲେଖନ୍ତି । ଭଲ ଲେଖନ୍ତି ପଇସା ନ ପାଇଲେ ମଧ୍ୟ ଲେଖନ୍ତି । କିନ୍ତୁ ସେମାନଙ୍କଠାରୁ ଲେଖା ଆଦାୟ କରିବା କଷ୍ଟ । କାରଣ ସେମାନଙ୍କର ଲେଖିବା 'ମୁଡ୍' ବଡ଼ କମ, ଏବଂ ଖୁବ ଘନିଷ୍ଠତା ଥିଲେ ଏବଂ ବହୁଥର ତାଙ୍କ ପାଖକୁ ଦଉଡ଼ି ପାରିଲେ ଯାଇ ଲେଖାଟିଏ ଆଦାୟ କରିହେବ ।

ଆଉ ଏକ ଧରଣର ଲେଖକ ଅଛନ୍ତି । ଭଲ ଲେଖନ୍ତୁ କି ନାହିଁ ସେମାନଙ୍କର ନାମ ହୋଇଚଲିଣି, ତେଣୁ ସେମାନଙ୍କୁ ବହୁଥର ଖୋସାମଦ କରିବାକୁ ପଡ଼େ । ବହୁତ ଭାଉ ଖାଆନ୍ତି ସେମାନେ ଭାରି ପ୍ରେଷ୍ଟିଜ କନସସ । ନୂଆ ପତ୍ରିକାରେ ସେମାନେ ଲେଖିବାକୁ ହେଲେ ସେମାନଙ୍କ ଉପରେ ବହୁ ପ୍ରଭାବ ପ୍ରୟୋଗ କରିବା ଆବଶ୍ୟକ ।

ଭଲ ଲେଖନ୍ତି ନାହିଁ, ଲେଖା ମାଗିଲେ ଗୋଡ଼ ନ ଲମ୍ବାଇ ଶୀଘ୍ର ଯଥା ସମୟରେ ଲେଖା ଦେଇ ଦେବା ଲୋକ ମଧ୍ୟ ଅଛନ୍ତି । କିନ୍ତୁ ସେମାନଙ୍କ ସଂଖ୍ୟା ମଧ୍ୟ ବଡ଼ କମ ।

ଭଲ ଲେଖନ୍ତି ନାହିଁ ଅଥଚ ମାଗିଲେ ଦେବେ ଏପରି ମଧ୍ୟ ଅଛନ୍ତି । ଭଲ ଲେଖନ୍ତି କିନ୍ତୁ ଏତେ ଲମ୍ବା ଲେଖନ୍ତି ଯେ ତାଙ୍କ ଲେଖା ଆସିଲେ ପତ୍ରିକାର

କଳେବର ଅଯଥା ବୃଦ୍ଧି ହୋଇଯିବ, ତେଣୁ ସେ ଦାୟରେ ପଡ଼ିବା ଅନୁଚିତ । ଭଲ ଲେଖନ୍ତି ନାହିଁ ଯଦିଓ ଆଗରୁ ଭଲ ଲେଖୁଥିଲେ । ପ୍ରବୀଣ ନାମ କରା ଲୋକ । ମାଗିଲେ ହଁ ଭରିବେ କିନ୍ତୁ ଦଉଡ଼ିବା ପାଇଁ ଦୁଇ ହଳ ଚଟି ଯୋତା ଦରକାର ଏମିତିଆ ଲେଖକ ମଧ୍ୟ ଅଛନ୍ତି ।

ଭଲ ଲେଖନ୍ତି ନାହିଁ । ମାଗିଲେ ବି ଲେଖା ଦେଇ ବାରମ୍ବାର ଟେଲିଫୋନ କରି, ଘରକୁ ଦଉଡ଼ି; ଚିଠି ପଠାଇ, ଅନ୍ୟ ଲୋକଙ୍କ ଦ୍ୱାରା ପ୍ରସ୍ତାବ ପକାଇ ତାଙ୍କ ଲେଖା ଛପାଇ ଦେବାକୁ ହରକତ୍ କରନ୍ତି ଏମିତିଆ ଲୋକ ତ ଅଛନ୍ତି ।

ଭଲ ଲେଖନ୍ତି କିନ୍ତୁ ସେମାନଙ୍କର ନାମ ନାହିଁ କିମ୍ବା ଲେଖା ଛପାଇ ନେବା ପାଇଁ ଯୋଗାଡ଼ ନାହିଁ, ଏ ମଧ୍ୟ ଗୋଟିଏ ଧରଣର ଲେଖକ । ଭଲ ଲେଖୁଛନ୍ତି କିନ୍ତୁ ନୂଆ ଲେଖକ । ତାଙ୍କୁ କେହି ଖୋଜୁ ନାହାନ୍ତି ଲୋଡ଼ୁ ନାହାନ୍ତି । କଲମଟା ଝଡ଼ିବାର ମଧ୍ୟ ସୁଯୋଗ ନାହିଁ ।

ବିଭିନ୍ନ ପ୍ରକାରର ଲେଖକ ଗୋଷ୍ଠୀକୁ ନେଇ ବିନା ପରିଶ୍ରମରେ ଲେଖା ପାଇ ପତ୍ରିକା ପ୍ରକାଶ କରିବା ବଡ଼ କଷ୍ଟକର ବ୍ୟାପାର ଏ ଓଡ଼ିଶା ରାଜ୍ୟରେ । ସବୁଠୁଁ ବଡ଼ ସମସ୍ୟା ଆର୍ଥିକ । ଲେଖକଙ୍କୁ ପାରିଶ୍ରମିକ ଦେବାକୁ ପତ୍ରିକା ପ୍ରକାଶକର ତୁ ନାହିଁ । ପତ୍ରିକା କିଣି କରି ପଢ଼ିବାକୁ ପାଠକ ସଂଖ୍ୟା ଏତେ କମ । ସେଥିରେ ଯାହା ବଢୁବାର କଥା ହେଉଛି ।

ତଥାପି 'ଚୟନିକା'କୁ ବଞ୍ଚାଇ ରଖିବା, ଉତ୍କର୍ଷ କରିବା ଓ ନିୟମିତ ପ୍ରକାଶ କରିବା ପାଇଁ ଉଦ୍ୟମ ହେଉଛି ।

ପ୍ରଦ୍ୟୁମ୍ନ ବଳ

ସମ୍ପାଦକୀୟ

# ସାହିତ୍ୟିକର ସାଂପ୍ରତିକ ପରିସ୍ଥିତି

ତିନି ବର୍ଷ ତଳେ ଭାରତୀୟ ପାର୍ଲିଆମେଣ୍ଟାରୀ ପ୍ରତିନିଧି ଦଳରେ, ଉତ୍ତର କୋରିଆ ଓ ମଙ୍ଗୋଲିଆ ଯିବା ପଥରେ, ଆମକୁ ତିନି ଦିନ ମସ୍କୋ ସହରରେ ଅତିବାହିତ କରିବା'କୁ ପଡ଼ିଥିଲା । ସେହି ଅବକାଶରେ ମସ୍କୋର ଜନ ଜୀବନ ସହିତ ପରିଚିତ ହେବା ପାଇଁ ମୋ ମନରେ ଜାଗିଥିଲା ଏକ ସ୍ଵାଭାବିକ କୌତୁହଳ । କମ୍ୟୁନିଜିମ୍‌ର ପିତୃଭୂମି ସୋଭିଏତ ରୁଷିଆର ଜନ-ଜୀବନ ସଂପର୍କରେ ମୋ ମନରେ ବରାବର ରହିଆସିଛି ଦ୍ୱନ୍ଦାତ୍ମକ ଧାରଣା । ଏହାର ଭାବମୂର୍ତ୍ତି ମୋ ମନରେ ଯେ ବିଶେଷ ସ୍ପଷ୍ଟ ନୁହେଁ ବା ନଥିଲା, ଏହା ଉଲ୍ଲେଖ କରିବା ନିଷ୍ପ୍ରୟୋଜନ । ଲେନିନ ମସୋଲିୟମ୍‌ରେ ଲେନିନ୍‌ଙ୍କ ଉଦ୍ଦେଶ୍ୟରେ ଶ୍ରଦ୍ଧା ଓ ଭକ୍ତି ନିବେଦନ ପାଇଁ ଲାଗିଥିଲା ଲମ୍ବା କ୍ୟୁ । ସୋଭିଏତ ରୁଷିଆର ବିଭିନ୍ନ ଅଞ୍ଚଳରୁ ଶତ ଶତ ଯୁବକ ଯୁବତୀଙ୍କର ମେଳ, ସେଠି କାହା ହାତରେ ଟ୍ରାଞ୍ଜିଷ୍ଟର ସ୍ତବକ, କିଏ ବା ଧରିଛି ଲାଲକେନା ଅଥବା ଗୋଲାପର ଗୁଚ୍ଛ । ସେହି କ୍ୟୁ ରେ ଠିଆ ହୋଇ ବିସ୍ମିତ ହୋଇ ଲକ୍ଷ୍ୟ କରିଥିଲି ସେଦିନ, ସାମ୍ପ୍ରତିକ ରୁଷ ତରୁଣ ତରୁଣୀଙ୍କୁ ମଧ୍ୟ କ୍ରମେ ଗ୍ରାସିଲାଣି ଆମେରିକାର 'ଜାନ୍ କଲଚର' ପରିଧାନ ପରିପାଟୀରେ ସେମାନଙ୍କର ଅବକ୍ଷୟଗ୍ରସ୍ତ ବୁର୍ଜୋୟାର ଛାପ । ସେହି କ୍ରମରେ ପାଶ୍ଚାତ୍ୟ ସମାଜର ଅବକ୍ଷୟର ନାମ ସଂକେତ ମଧ୍ୟ ଲକ୍ଷ୍ୟ କରିଛି ସେମାନଙ୍କର ଦୈନନ୍ଦିନ ସାଧାରଣ ଆଚରଣରେ । ଦୃଶ୍ୟଟା ଆଶ୍ଚର୍ଯ୍ୟ ଲାଗିଲା । କାହାକୁ ପଚାରିବାର ଉପାୟ ନାହିଁ । ସେଦିନ ସଂଧ୍ୟାରେ ଆମ ଦୂତାବାସର-ଜଣେ ତରୁଣ ଅଫିସରଙ୍କ ଠାରେ ମୁଁ ପ୍ରକାଶ କରିଥିଲି ମୋର ଅନୁଭୂତି । କିଛି ବର୍ଷ ମସ୍କୋରେ ରହିବା ଫଳରେ ରୁଷିଆର ଜନ ଜୀବନ ସହିତ ସେ ବେଶ ସୁପରିଚିତ । ସେ କହିଲେ..... "ରୁଷିଆ କହିଲେ ଆପଣ-ମାନଙ୍କ ମନରେ ରହିଯାଇଛି ଷ୍ଟାଲିନ ଅମଳର ଭାବ ମୂର୍ତ୍ତି । କିନ୍ତୁ ସେ ରୁଷିଆ ଆଉ ଏବେ ନାହିଁ । ରୁଷିଆକୁ ମଧ୍ୟ ଆମଦାନୀ ହେଲାଣି ଆମେରିକାର ଜୀନ-ସଂସ୍କୃତି ରୁଷିଆର ଜନନେତା ମାନଙ୍କର ଆଜି ଏକ ଉତ୍ପାତକ ସମସ୍ୟା

ହେଉଛି, ଏ ପୀଢ଼ି (Generation) କ୍ରମେ ଯେପରି (ସଫଟ) (soft) ହୋଇ ଯାଉଛି, ଯେପରି ତାର ସଂଗ୍ରାମୀ ମନୋବୃତ୍ତି କ୍ରମେ ହ୍ରାସ ପାଉଛି—ସୋଭିଏତ ସମାଜ ପକ୍ଷରେ ତାହା ଆପାତତଃ ରମଣୀୟ ହେଲେ ହେଁ ଶୁଭଙ୍କର ନୁହେଁ । ଏ ସମାଜ କଣ ଜନ୍ମ ଦେଇ ପାରିବ ଆଉ ଜଣେ ଲେନିନ୍ ? ଆଉ ଜଣେ ଷ୍ଟାଲିନ ? ଆଉ ଜଣେ ଗର୍କୀ ?—ଯେଉଁ ହୋଇଛି ସେମାନଙ୍କର ସଙ୍କଟ । ବସ୍ତୁତଃ ଜନ୍ମଠାରୁ ମୃତ୍ୟୁ ପର୍ଯ୍ୟନ୍ତ, ରାଷ୍ଟ୍ର ପ୍ରତ୍ୟେକ ନାଗରିକର ସ୍ୱାଚ୍ଛନ୍ଦ୍ୟ ଓ ନିରାପତ୍ତାର ଦାୟିତ୍ୱ ନେଇଥିବା ବେଳେ, ସେମାନଙ୍କ ଠାରେ ସଂଗ୍ରାମୀ ମନୋବୃତ୍ତି ଆଉ ପ୍ରକାଶ ପାଇବ କୁଆଡ଼ୁ ? ଜନ୍ମ ଠାରୁ ମୃତ୍ୟୁ ପର୍ଯ୍ୟନ୍ତ, ଦୋଳିଠାରୁ କଫିନ ପର୍ଯ୍ୟନ୍ତ, ସବୁତ ସେମାନଙ୍କର ସୁନିଶ୍ଚିତ, ସୁନିୟନ୍ତ୍ରିତ । ରୁଷିଆର ନବନିର୍ମାତା ମାନଙ୍କର ମୂଲ୍ୟବୋଧ ସହିତ ସେମାନେ ପରିଚିତ ହୋଇ ପାରିବେ ବା କିପରି ? କିପରି ବା ଉପଲବ୍ଧି କରିପାରିବେ ସେମାନଙ୍କ ସଂଗ୍ରାମ ? ସ୍ୱାଭାବିକ ଭାବରେ ଏହାର ପ୍ରତିକ୍ରିୟା ପ୍ରକାଶ ପାଇଛି, ସାମ୍ପ୍ରତିକ ସୋଭିଏତ ସାହିତ୍ୟରେ । ସୋଭିଏତ ସାହିତ୍ୟ ସହିତ ମୋର ପରିଚୟ "Soviet Literature" ପତ୍ରିକା ମାଧ୍ୟମରେ । ଏଥିରେ ପ୍ରକାଶ ପାଉଥିବା ଗଳ୍ପ, ଉପନ୍ୟାସ ସବୁ କ୍ରମେ ଏପରି ରସହୀନ ଓ ବସ୍ତୁତାନ୍ତ୍ରିକ ହୋଇ ଉଠୁଥିଲା ଯେ, କେତୋଟି ପୃଷ୍ଠା ଓଲଟାଇ ଯିବା ପରେ, ପତ୍ରିକା ବନ୍ଦ କରିଦେବାକୁ ପଡ଼ୁଥିଲା, ଅଥଚ ଚେକଭ୍, ଟୁରଗେନିଭ, ଗର୍କୀ, ସୋଲୋକଭ—ଏମାନଙ୍କ ସୃଷ୍ଟି ଯେ ଚିରନ୍ତନ ଓ ଉପମେୟ ସେଥିରେ ତ ସନ୍ଦେହ ନାହିଁ । କିନ୍ତୁ ଦିନେ "ସୋଭିଏତ ଲିଟରେଚର"ର ପୃଷ୍ଠା ଓଲଟାଇ ଦେଖିଲି, ସେଥିରେ ପ୍ରଥମେ ଯେଉଁ ଦୁଇଟୋଟି ଗଳ୍ପ ପ୍ରକାଶ ପାଇଛି ସେଥିରୁ ଗୋଟିକର ଲେଖକ, ମାକସିମ ଗର୍କୀ ଅନ୍ୟଟିର ଲେଖକ ଚେକଭ୍ । ପ୍ରଥମେ ନିଜ ଆଖିକୁ ବିଶ୍ୱାସ କରି ପାରିଲି ନାହିଁ । ରୁଷିଆରେ ପୁଣି ଗର୍କୀ, ଚେକଭ ଜନ୍ମିଲେଣି ନା କ'ଣ ? "ସୋଭିଏତ ଲିଟରେଚର"ର ଦିଲ୍ଲୀ କାର୍ଯ୍ୟାଳୟକୁ—ଯେଉଁ ମାନଙ୍କର ପ୍ରତିନିଧି ନିୟମିତ ଆସି ସୋଭିଏତ ପତ୍ର ପତ୍ରିକାର ଗ୍ରାହକ ନବୀକରଣ କରି ଥାଆନ୍ତି-ଏକଥା ପଚାରିଲି । ତାଙ୍କର ଜଣେ ପ୍ରତିନିଧି କହିଲେ "ଏ ଯୁଗର ନୂତନ ଲେଖକ ଓ ପାଠକ ମାନଙ୍କୁ ପୂର୍ବସୂରୀ ମାନଙ୍କର ରଚନା ଓ ମୂଲ୍ୟବୋଧ ସହିତ ପରିଚିତ କରିବା ପାଇଁ ସାମ୍ପ୍ରତିକ ଲେଖକ ମାନଙ୍କ ଲେଖା ସହିତ ପୁରାତନ ଲେଖକ ମାନଙ୍କ ଲେଖା ମଧ୍ୟ ଆମେ ପ୍ରକାଶ କରୁଛୁ । ଏହି ପ୍ରବୃତ୍ତି ମଧ୍ୟ ପରେ ଲକ୍ଷ୍ୟ କରିଥିଲି ଗୋଟିଏ ପ୍ରତିଷ୍ଠିତ ବଙ୍ଗଳା ସାହିତ୍ୟ ପତ୍ରିକାରେ । ବୈଦେଶିକ ସାହିତ୍ୟ ସହିତ ମୋର ପରିଚୟ ଉପର ଠାଉରିଆ—

କେବଳ ଇଂରାଜୀ ଅନୁବାଦ ମାଧ୍ୟମରେ, କିଛିଟା ପଲ୍ଲବୀଗ୍ରାହିତା । କିନ୍ତୁ ସେହିଥିରୁ ମୋର ମନେ ହୁଏ, ପ୍ରାୟ ସବୁ ସାହିତ୍ୟରୁ ସୃଷ୍ଟି ଧର୍ମୀ ରଚନା କ୍ରମେ ବିଦାୟ ନେଲାଣି ।

ଆମେରିକାନ ଔପନ୍ୟାସିକ ସଲବେଲୋ ନୋବେଲ ପୁରସ୍କାର ପାଇବା ପରେ ତାଙ୍କର କେତେ ଖଣ୍ଡ ଉପନ୍ୟାସ ଆଗ୍ରହରେ ଆଣିଲି ମୋର ଜଣେ ବନ୍ଧୁଙ୍କ ଠାରୁ । ତାଙ୍କୁ ପଚାରିଲି.........“ ସମୟର ଅପବ୍ୟୟ ହେବନାହିଁ ତ ?” ସେ ଉତ୍ତର ଦେଲେ.........“ସେ ପ୍ରଶ୍ନର ଉତ୍ତର ଆପଣଙ୍କ ଠାରୁ ପାଇବା ପରେ ମୁଁ ତାକୁ ପଢ଼ିବି” । ସଲବେଲୋଙ୍କର ଉପନ୍ୟାସ ପଢ଼ି ମନେ ହେଲା, ଗୋଟିଏ ପାଗଳା ଗାରଦରେ ବସି କିଏ ଯେପରି ସେସବୁ ଗାରେଇଛି । ସାହିତ୍ୟରୁ ପ୍ରଥମେ ଟ୍ରାଜେଡି, ତା ପରେ ମହାକାବ୍ୟ, ତା ପରେ ପଞ୍ଚାଙ୍କ ବିଶିଷ୍ଟ ନାଟକ ପ୍ରଭୃତି ଯେପରି ବିଦାୟ ନେଲାଣି ରସୋତ୍ତୀର୍ଣ୍ଣ ଗଳ୍ପ ଉପନ୍ୟାସ ମଧ୍ୟ ସେହିପରି କ୍ରମେ ବିଦାୟ ନେଉଛି ବୋଲି କହିଲେ ସତ୍ୟର ଅପଳାପ ହେବନାହିଁ । ଆଲୋଚକ ଓ ସମୀକ୍ଷକ ମାନେ ଏହାକୁ Post-modern ଆଖ୍ୟା ଦେଇ କିଛିଟା ସାନ୍ତ୍ୱନା ଦେଉଛନ୍ତି ଅବଶ୍ୟ; ମାତ୍ର ତାହା ଏପରି ବକ୍ତବ୍ୟହୀନ ରସହୀନ ହେବ କାହିଁକି ? ବିଭିନ୍ନ ସାହିତ୍ୟରେ ଉପନ୍ୟାସର ଉତ୍ପାଦନ ହେଉଛି ପ୍ରଚୁର । କିନ୍ତୁ ସେ ସବୁ ସାହିତ୍ୟର ଯଶଗ୍ରନ୍ଥରେ ରେଖାପାତ କରିପାରୁଛି ବୋଲି ମୋର ସନ୍ଦେହ ।

ଅଥଚ କାହିଁକି ? ଆଜିର ପରିବେଶ, ପୂର୍ବ ପୀଢ଼ିର ପରିବେଶ ଠାରୁ ଯଥେଷ୍ଟ ଉନ୍ନତ ଓ ଅନୁକୂଳ । ଆମର ପୂର୍ବଜ ମାନେ ଯେଉଁ ପ୍ରକାର ପ୍ରତିକୂଳ ପରିସ୍ଥିତି ମଧ୍ୟରେ ସାହିତ୍ୟ ସୃଷ୍ଟି କରିଥିଲେ, ସେ ପ୍ରକାର ପରିସ୍ଥିତି ବା ପରିବେଶ ଆଜି ନାହିଁ । ଆଜିର ଲେଖକ ମାନଙ୍କ ଠାରେ ପ୍ରତିଭାର ମଧ୍ୟ ଅଭାବ ନାହିଁ । ତା ହେଲେ ସୃଷ୍ଟିଧର୍ମୀ ସାହିତ୍ୟରେ ଏ ଅବକ୍ଷୟ କାହିଁକି ?

ଜଁ ପଲ ସାର୍ତ୍ରେ “What is literature ପୁସ୍ତକରେ Situation of the writter is 1947” ଶୀର୍ଷକ ନିବନ୍ଧରେ ଏହାର ଗୋଟିଏ ସଦୁତ୍ତର ଦେଇଛନ୍ତି । ତାଙ୍କ ମତରେ.......... ।

“From this point of view, the situation of the writer has never been so paradoxical. It seems to be made up, of the most Contradictory Characteri-

stics on the asset sides, brilliant appearances, vast possibilities on the whole an enviable way of life, on the debit side only this : that literature to dying. Not that talent or good will is locking, but it has no longer any thing to do in Contemporary society We no longer know for whom to write"

(ପୃ—୧୬୭)

ଏହାର ଭାବାର୍ଥ ଏହିପରି ହେବ—ସାମ୍ପ୍ରତିକ ଲେଖକର ପରିସ୍ଥିତି ଆଜି କେବେ ଏପରି ଆପାତ ବିରୋଧୀ ନ ଥିଲା । ଏଥିରେ ଲକ୍ଷ୍ୟ କରିବାର ଅଛି, ଦୁଇଟି ପରସ୍ପର ବିରୋଧି ପ୍ରବୃତ୍ତି । ଲାଭ ଦୃଷ୍ଟିରୁ ଅଛି, ଆଖି ଝଲସାଇବା ଭଳି ଔଜ୍ଜ୍ୱଲ୍ୟ ବିପୁଳ ସମ୍ଭାବନା, ମୋଟା ମୋଟି ଈର୍ଷା କରିବା ଭଳି ଜୀବନ-ଚର୍ଯ୍ୟା । କ୍ଷତି ଦୃଷ୍ଟିରୁ ମଧ୍ୟ ରହିଛି ସାହିତ୍ୟ ଆଜି ମୁମୂର୍ଷୁ । ପ୍ରତିଭା ବା ଶୁଭ-ସଂକଳ୍ପର ଅଭାବ ପାଇଁ, ସାହିତ୍ୟ ଯେ ଆଜି ମରଣୋନ୍ମୁଖୀ ତାହା ନୁହେଁ; ସାମ୍ପ୍ରତିକ ସମାଜ ସହିତ ଏହାର କୌଣସି ସଂପର୍କ ନାହିଁ । .... କାହା ପାଇଁ ଆମେ ଆଜି ଲେଖୁଛୁ ତାହା ଜାଣୁ ନାହିଁ ।

ବସ୍ତୁତଃ ଲେଖକ ଓ ସମାଜ ମଧ୍ୟରେ ସମ୍ପର୍କଚ୍ୟୁତି ଆଜି ଯେପରି ଗଭୀର, ସେହିପରି ବିସ୍ତୀର୍ଣ୍ଣ କୌଣସି କୌଣସି ସାମ୍ପ୍ରତିକ କବି ଘୋଷଣା କରିଥିବାର ଶୁଣୁଛି " ଆମେ ଲେଖୁଛୁ ଆମ ନିଜର ଭାବାବେଗକୁ ପ୍ରକାଶ କରିବା ପାଇଁ ସମ୍ପାଦକ ଓ ପ୍ରକାଶକ ମାନେ ସେ ସବୁ ମଧ୍ୟ ଛପାଉଛନ୍ତି । ଯଦି ପାଠକ ମାନେ ବୁଝି ନ ପାରିଲେ ସେ ଦାୟିତ୍ୱ ସେମାନଙ୍କର । ଆମର ନୁହେଁ ଏପରି ମନୋଭାବ ବା ଦୃଷ୍ଟିକୋଣ ବହୁସ୍ଫୀତ ଅହଙ୍କାର ବୋଲି ଉପେକ୍ଷା କରି ହେବ ନାହିଁ । ଆଜିର ରାଷ୍ଟ୍ରଜୀବନ ଠାରୁ ଉତ୍ପାଦନ ଓ ବଣ୍ଟନ ପଦ୍ଧତି ପର୍ଯ୍ୟନ୍ତ ସବୁ ଯେପରି କେନ୍ଦ୍ରୀଭୂତ ହୋଇଛି, ସେଥିରେ ବ୍ୟକ୍ତି-ସତ୍ତା ବା ବ୍ୟକ୍ତ ସ୍ୱାତନ୍ତ୍ର୍ୟ ବିଲୀନ କହିଲେ ଅତ୍ୟୁକ୍ତି ହେବ ନାହିଁ । ସର୍ବ-ଗ୍ରାସୀ ସମଷ୍ଟି ମଧ୍ୟରେ ବ୍ୟଷ୍ଟି ଆଜି ରୁଦ୍ଧଶ୍ୱାସ । Mass ଏ ଯୁଗର ନୂତନ ଗଣପତି । ତାଙ୍କ ପୂଜା-ମଣ୍ଡପରେ ବ୍ୟକ୍ତି ବା individualର ସ୍ଥାନ ନାହିଁ । ଦାଣ୍ଡରେ ରଜନୀତି ଠାରୁ କାରଖାନାରେ ଉତ୍ପାଦନ ପର୍ଯ୍ୟନ୍ତ ଏହି Mass ଆଜି ସମସ୍ତଙ୍କର ଧ୍ୟେୟ ଓ ଶ୍ରେୟ । ଏ ରୁଦ୍ଧଶ୍ୱାସ ପରିସ୍ଥିତିରେ ଲେଖକ ଚିନ୍ତା ଆତ୍ମକେନ୍ଦ୍ରିକ ହୋଇ ପଡ଼ିବା ହିଁ ସ୍ୱାଭାବିକ । ତେଣୁ ସ୍ୱାଭାବିକ ଭାବରେ ତାର

ସୃଷ୍ଟି କର୍ମରେ ଆସିଛି, ଅସ୍ପଷ୍ଟ ଦୁର୍ବୋଧ୍ୟତା । ଆସିଛି ସେକ୍ସ ଆସିଛି ଭାୟୋଲେନସ୍ । କାରଣ ଏହି ସେକ୍ସ ଓ ଭାଇଓଲେନସ ଦୁଇଟା କ୍ଷେତ୍ରରେ ହିଁ ବ୍ୟକ୍ତି ନିରଙ୍କୁଶ । ବିକଶିତ (Devloped) ଦେଶର ସମାଜରେ, ଏ ପ୍ରବୃତ୍ତି ସ୍ୱାଭାବିକ ହେଲେ ହେଁ, ଭାରତ ପରି ବିକାଶୋନ୍ମୁଖ (devloping) ଦେଶର ସାହିତ୍ୟରେ ଏ ପ୍ରବୃତ୍ତି ଅନେକଟା ପାଶ୍ଚାତ୍ୟରୁ ଆମଦାନୀକୃତ, ସେଥିରେ ସନ୍ଦେହ ନାହିଁ । ତଥାପି ଆମ ଦେଶରେ ସୃଷ୍ଟ ପରିସ୍ଥିତିର ଏ ବିଡମ୍ବନା ବା ବିକୃତକୁ ଏଡ଼ିବା ସମ୍ଭବ ନୁହେଁ । ଅର୍ଥନୀତି କ୍ଷେତ୍ରରେ ବିକଶିତ ଓ ବିକାଶଶୀଳ ଦେଶ ମଧ୍ୟରେ ସୀମା ସରହଦ ଟଣା ଯାଇପାରେ । କିନ୍ତୁ ଭାବ ଜଗତରେ ନୁହେଁ । ତେଣୁ ବୃହତ୍ତର ଜୀବନ ଓ ସମାଜ ଠାରୁ ବିଚ୍ଛିନ୍ନ ରହି ବ୍ୟକ୍ତି ଆଜି ଗୋଟାଏ ଗୋଟାଏ ନିର୍ଜନ ଦ୍ୱୀପରେ ପରିଣତ ହୋଇଛି ତାର ନିର୍ଜନତା ଓ ନିଃସଙ୍ଗତାର ଉଚ୍ଚାରଣ ରୂପେ, ଯେଉଁ ସାହିତ୍ୟ ସୃଷ୍ଟି ହେଉଛି, ତାହା ସମାଜ ଜୀବନକୁ ପ୍ରଭାବିତ ବା ଅନୁପ୍ରେରିତ କରି ପାରିବ କିପରି ? ସେଥିପାଇଁ ସଲବେଲୋ ଫିଙ୍ଗି ଦେଇ ଆମକୁ ଫେରି-ଯିବା ପାଇଁ ପଡ଼ୁଛି, ଷ୍ଟାଇନ ବେକ ବା ହେମିଙ୍ଗ୍‌ୱେଙ୍କ ପାଖକୁ, ବେକେଟ, ଇଓନେସ୍କୋଙ୍କୁ ଫିଙ୍ଗି ଦେଇ ଫେରିଯିବା ପାଇଁ ସେକସପିୟର ଇବସେନଙ୍କ ପାଖକୁ ।

ଇଏ ତ ଗଲା ଲେଖକ ମାନଙ୍କ କଥା, ପାଠକ ମାନଙ୍କ ଦୃଷ୍ଟିରୁ ପରି-ସ୍ଥିତି ଆହୁରୀ ଦୟନୀୟ । ସିନେମା, ଟେଲିଭିଜନ ଓ ରେଡ଼ିଓ ପ୍ରଭୃତି (massmedia), ସାହିତ୍ୟକୁ କ୍ରମେ ସ୍ଥିତିଭ୍ରଷ୍ଟ କଲେଣି । ବହୁ ଲୋକଙ୍କ ହାତକୁ ଆଜି ଶସ୍ତା ପଇସା ଆସୁଛି, ମାତ୍ର ସେମାନଙ୍କର ନାହିଁ ରୁଚି-ବୋଧ । ଯେଉଁ ମାନଙ୍କର ରୁଚି ବୋଧ ଅଛି, ସେମାନଙ୍କ ପାଖରେ ପଇସା ନାହିଁ । ଭେଳା ଭେଳା ମଣିଷ ବ୍ଲାକ୍‌ରେ ଟିକଟ କିଣି, ପୋଲିସର ଠେଙ୍ଗୁଣା ଖାଇ ସିନେମା ଦେଖିବେ, କିନ୍ତୁ ବହି ଖଣ୍ଡେ କିଣିବେ ନାହିଁ । ପୂର୍ବୋକ୍ତ ଶ୍ରେଣୀ ବା ଗୋଷ୍ଠିଙ୍କ ସ୍ପୃହିଦା, ସିନେମା ଯେପରି ମେଣ୍ଟାଇ ପାରୁଛି, ସାହିତ୍ୟ ସେ ପ୍ରତିଯୋଗୀତାରେ ଆଦୌ ପାରି ଉଠୁ ନାହିଁ । ବରଂ ତାହାର ଆନୁକରଣ କରି ସାହିତ୍ୟରେ ସେ ମିଶାଉଛି ଉଲଗ୍ନ ଯୌନତା, ଓ ଆସୁରିକ ଭାଇଓଲେନସର ଅନୁପାନ । ସତ୍ ସାହିତ୍ୟିକ ମାନେ ଏ ପରିସ୍ଥିତିରେ କଲମ ବନ୍ଦ କରି ଦେଉଛନ୍ତି ସିନା; ସେପରି ଅନୁକରଣ ବା ଅନୁସରଣରୁ ନିଜକୁ ନିବୃତ୍ତ ରଖୁଛନ୍ତି ।

ଏ ସବୁ ବିଡ଼ମ୍ବନା ମଧ୍ୟରେ ସୁଦ୍ଧା ସମାଜର ସୁରୁଚି ଓ ବୈଦଗ୍ଧ୍ୟ ରହିଛି । ନୂତନ ପ୍ରତିଭାଧର ଲେଖକ ମାନଙ୍କର ମଧ୍ୟ ଉନ୍ମେଷ ଘଟୁଛି । କିନ୍ତୁ ସେମାନଙ୍କୁ ବୃହତ୍ତର ଜନଜୀବନ ଓ ସମାଜ ସହିତ ଯୋଗସୂତ୍ର ସ୍ଥାପନ କରିବା ପାଇଁ ପଡ଼ିବ, ସମାଜର ପ୍ରାଣ ସ୍ପନ୍ଦନକୁ ସ୍ପର୍ଶ କରିବା ପାଇଁ ପଡ଼ିବ ସୁରୁଚି ଓ ଉନ୍ନତ ମୂଲ୍ୟବୋଧ ସୃଷ୍ଟି କରିବାକୁ ପଡ଼ିବ । ଏଥି ପାଇଁ କେହି ଅବଶ୍ୟ ଧନ୍ୟବାଦ ଦେବେ ନାହିଁ । ତଥାପି ଏହାହିଁ ସାହିତ୍ୟିକର ଧର୍ମ । ଏ ଆଜିର ଅନୁଭବ ନୁହେଁ । ସ୍ୱୟଂ ମହାକବି କାଳିଦାସ ସୁଦ୍ଧା ସାହିତ୍ୟିକରେ ଧର୍ମ ସଂପର୍କରେ "ଅଭିଜ୍ଞାନ ଶକୁନ୍ତଳମ୍"ର ଆରମ୍ଭରେ ସୂତ୍ରଧର ମୁହଁରେ କୁହାଇଛନ୍ତି ।

" ଆ ପରିତୋଷାତ୍ ବିଦୁଷାଂ ନ ସାଧୁମନ୍ୟେ ପ୍ରୟୋଗ ବିଜ୍ଞାନଂ "

ଯେ ପର୍ଯ୍ୟନ୍ତ ବିଦଗ୍ଧ ସମାଜର ରସଚେତନା ତୁଷ୍ଟ ହୋଇ ନାହିଁ । ସେ ପର୍ଯ୍ୟନ୍ତ ସାହିତ୍ୟରେ କେବଳ ପ୍ରୟୋଗ କୌଶଳ(experiment) କୁ ଯଥାର୍ଥ ବା ଯଥେଷ୍ଟ ବୋଲି ମନେ କରି ହେବନାହିଁ ।

ସୁରେନ୍ଦ୍ର ମହାନ୍ତି

# ମଥାହୀନ ମୁକୁଟ

■ ଶକୁନ୍ତଳା ଦେବୀ

ଗଛରୁ ଫୁଲଟିଏ ସିନା ତୋଳିପାରେ ନାହିଁ
ଏଇ ଫଳ ପୁଷ୍ପ ଭରା ଉଦ୍ୟାନରେ
ଅନ୍ୟଜଣେ ମାଲିକ ଓ ଅଂଶିଦାର କେହି
ଉଦ୍ୟାନ ରକ୍ଷକ ମାଳୀ ମୁଁ କେବଳ
ନାମହୀନ ମଣିଷ ଗୋଟାଏ ।

ଗଛମୂଳେ ପାଣି ଦେଇ ଦୁବଘାସ ହାତରେ ଉପାଡ଼ି
ଝାଉଁଳା ଗଛକୁ ଧରି ଗେଳ କରୁଥାଏ ।

ଫୁଲ ପାଇଁ ଗଛ ଯେବେ ନୂଆକରି କଢ଼ିଧରେ,
ଟେଣ୍ଠା, ପେଣ୍ଠା, ଲମ୍ବିଆସେ ଆନନ୍ଦର ବନ୍ଧନ
କେହି ଦେଖିବା ଆଗରୁ ମୁଁ ଦେଖେ କେବଳ,
ପ୍ରଥମ ଧୂପର ବାସ୍ନା ଆଉ କେହି ପାଇବା ପୂର୍ବରୁ
ମୋ' ନାକରେ ଦେଇଯାଏ ତା' ଆସିବା ପ୍ରଥମ ସଙ୍କେତ
ଓ ମୋ' ମନରେ ଛୁଇଁଦିଏ ତା' କଣ୍ଠର ପ୍ରଥମ ସଙ୍ଗୀତ ।

ମୁଁ ନିଃସଙ୍ଗ ଚିରଦିନ
ସ୍ନେହରେ ଅତିହିଁ ଅନ୍ଧ,
ଜୀବନର ବିକ୍ଷିପ୍ତ ଓ ଜୀର୍ଣ୍ଣ-ଶୀର୍ଣ୍ଣ ପୃଷ୍ଠା
ଇଚ୍ଛା ହୁଏ ନାହିଁ ଆଉ ଯୋଡ଼ିବାକୁ
ମନହୁଏ କିଏ ଯଦି ଦିଅନ୍ତା ସଜାଡ଼ି..... ।

ଆପଣାର ନୁହେଁ ବୋଲି ଫୁଲଟିଏ ତୋଳିବନି,
ଫଳଟିଏ ଛୁଇଁବନି ଅବା, ଦୁଇହାତ ଲମ୍ବାକରି
ହରଷ ମନରେ ।

ଆପଣା ଛାଇଁକୁ ଯଦି ଫୁଲଟିଏ ଖସି ନିଜେ
ତଳେ ପଡ଼ିଯାଏ
ମୋର କି'ଅପରାଧ ? ସାଉଁଟା ଫୁଲଟି ନେଇ
ପୂଜାଡାଲା ସଜାଡ଼ି ବସିଲେ
ଅବା ନୂଆ ଫଳଟିକୁ ଦେବତାଙ୍କ ପାଦତଳେ
ଉତ୍ସର୍ଗ କରିଲେ ?

ସାମୟିକ ସୁଖରେ ବା କି ଆନନ୍ଦ ।
କାହାର କର୍କଶତାକ, ବନ୍ଧୁକ୍ ମାଡ଼ରେ
ସାଉଁଟା ଫୁଲଟି ମୋର ହାତରୁ ଖସାଇଦେଇ
ପ୍ରତିବିମ୍ବ ହେବା ପାଇଁ ବାଧ୍ୟ କରୁଥାଏ ।

କିହାତି ନିର୍ଲଜ ହେଇ ସ୍ନେହ ଆଉ ମମତାର
ବନ୍ଧନରେ ଝୁଣ୍ଟି ପଡ଼ୁ ପଡ଼ୁ
କିଛି ଅଧିକାର ଏବଂ ସ୍ୱୀକୃତି ନଥାଇ
ବାଉନ୍ଦାର ବନ୍ଧୁକରେ ସଚେତନ ହୋଇ
ମୁଁ କେମିତି ଏତିକି ବି ବୁଝିପାରେନାହିଁ-

କିଛି ନାହିଁ ଏଠି ମୋର,
କର୍ତ୍ତୃ'ତ୍ୱ ତ'ପରିକଳ୍ପନାର
କର୍ତ୍ତାର ଆଦେଶ ନେଇ ଲାଳନ ପାଳନ ପାଇଁ
ମୁଁ କେବଳ କିଛି ହକ୍‌ଦାର !
କୃଷ୍ଣଚୂଡ଼ା, ଅପରାଜିତା ଓ ପାରିଜାତ ସମାନ ମୂଲ୍ୟରେ
ଏକରୁ ଅନେକ ହୋଇ, ଅନେକରୁ ନିଶୂନ୍ ହୁଅନ୍ତି
ପୁଣି ଏଇ ଆଖି ପଲକରେ ।
ଛୁଇଁବାକୁ ମନା ମତେ ଛୁଇଁ ପାରେ ନାହିଁ
ଅଥଚ ସେମାନେ ମୋତେ ନିଜେ ଛାଡ଼ି ଯାନ୍ତି ପଳାଇ ।
ତେବେ ବି କାହିଁକି ମୁଁ ପାଦ କାଢ଼ିପାରେନାହିଁ
ମୁକ୍ତ ହୋଇ ପାରେ ନାହିଁ ଦାୟିତ୍ୱକୁ ଜଳାଞ୍ଜଳି ଦେଇ
ମୋ ପାଇଁ ଉଦ୍ଦିଷ୍ଟ ସେଇ ଛୋଟ ଘନ୍ତାଟିରେ
କଣ ଥାଏ କେଜାଣି ..... .... ।
ମାର୍ଫତ : ଡାକ୍ତର ଏସ୍ ବି. ତ୍ରିପାଠୀ
ମହାପାତ୍ରୀ, ମଙ୍ଗଳାବାଗ, କଟକ-୧

• ଜଗନ୍ମୋହନ ସାହୁ

# କବି ମାନସିଂହ : ଜୀବନବାଣୀ

ଜୀବନର ଅନୁଭୂତି ଜୀବନବାଣୀ ନୁହେଁ । ବଳିଷ୍ଠ ବ୍ୟକ୍ତିତ୍ୱ ମାଧ୍ୟମରେ ପ୍ରକାଶିତ ଅନୁଭୂତିଜାତ ସତ୍ୟ ହିଁ ଜୀବନବାଣୀ । ମଣିଷ ଜୀବନରେ ବହୁ ଅନୁଭୂତି ହାସଲ କରେ । ପ୍ରତ୍ୟେକ ଅନୁଭୂତି ଚିନ୍ତା ରାଜ୍ୟରେ ସୃଷ୍ଟିକରେ ଉଦ୍‌ବେଳନ । ମଣିଷର ଚିନ୍ତାଧାରା ସବୁ ସମୟରେ ଯୁକ୍ତିନିଷ୍ଠତା ଦେଇ ଗତିଶୀଳ । ଅନୁଭୂତି ଭିତ୍ତିକ ନିଜ ଚିନ୍ତାଧାରାର ଶେଷ ସତ୍ୟକୁ ବ୍ୟକ୍ତିତ୍ୱ ଗ୍ରହଣ କରିପାରେ କିମ୍ବା ଗ୍ରହଣ କରି ନ ପାରେ । Herbert Readଙ୍କ ମତରେ "For though thought by its own nature is capable of loqical development it can be informed by the whole personality, and therefore made real only when that personality is free to adapt itself to the movements of the thoughts." ତେଣୁ ସାଧାରଣ ବ୍ୟକ୍ତିତ୍ୱ ନିଜ ଚିନ୍ତାରାଜ୍ୟରୁ ଅନୁଭୂତିଜାତ ସତ୍ୟକୁ ସହଜରେ ଗ୍ରହଣ କରିନିଏ ଏବଂ ସାଦାସିଧା (Real) ଭାବେ ପ୍ରକାଶ କରେ । ସେଥିରେ ସ୍ୱବ୍ୟକ୍ତିତ୍ୱର ସ୍ପର୍ଶ ନ ଥାଏ । ଏ ଜୀବନର ବାଣୀ ସାଧାରଣ ଭୌତିକ ଜଗତର ଯୁକ୍ତିନିଷ୍ଠ ସତ୍ୟତା ସହ ସମାନ । ଏହି ଜୀବନବାଣୀ ଅନ୍ୟ ଜଣଙ୍କର ଚିନ୍ତା ରାଜ୍ୟରେ ଭିନ୍ନ ସ୍ୱାଦୁ ନେଇ ପହଞ୍ଚି ପାରେ ନାହିଁ । କିନ୍ତୁ ବଳିଷ୍ଠ ବ୍ୟକ୍ତିତ୍ୱ ନିଜ ଚିନ୍ତାରାଜ୍ୟରୁ ଅନୁଭୂତିଜାତ ସତ୍ୟକୁ ସହଜରେ ଗ୍ରହଣ କରେନାହିଁ । ଏହି ଅନୁଭୂତିଜାତ ସତ୍ୟ ଯଦି ବ୍ୟକ୍ତିଗତ ଆଦର୍ଶ ସହ ସାମ୍ୟ ରକ୍ଷାକରେ ତାହେଲେ ଶତଗୁଣିତ ସୌନ୍ଦର୍ଯ୍ୟ ନେଇ ଆତ୍ମପ୍ରକାଶ କରେ ନତୁବା କ୍ଷତବିକ୍ଷତ ଆଘାତ ଜର୍ଜରିତ ହୋଇ ବାହାରିଆସେ । ଉଭୟଟି ସ୍ୱତନ୍ତ୍ର ସ୍ୱାଦୁର ପରିଚାୟକ । ପୁନଶ୍ଚ Herbert Read ସ୍ୱୀକାରକରନ୍ତି "× × × I have said further that all poetry in which I include all lyricals mpulses what so ever, is th eproduct of the personality."

1) H. Read-Personality of the poet:-Selected writing. Page 97, 1963.
2) H. Read-Personality of the poet Selected Writings Page 88, 1963.

ସେହିପରି କବି ମାନସିଂହ ହେଲେ ବଳିଷ୍ଠ ବ୍ୟକ୍ତିତ୍ୱର ଅଧିକାରୀ । ତାଙ୍କର ସମଗ୍ର କାବ୍ୟ ପରିଧି ଭିତରେ ଦେଶ. ଜାତି, ପ୍ରେମ, ପ୍ରଣୟ, ସଭ୍ୟତା, ସଂସ୍କୃତି; ଧର୍ମ, ଦର୍ଶନ ଇତ୍ୟାଦି ନିଜ ବ୍ୟକ୍ତିତ୍ୱର ଯଥାର୍ଥ ଅଭିବ୍ୟକ୍ତି । ମାନସିଂହଙ୍କର ସମଗ୍ର କାବ୍ୟ କବିତାହିଁ ତାଙ୍କ ଜୀବନବାଣୀ । କୌଣସି ଜାଗତିକ ସତ୍ୟର ସେ ଅନ୍ଧାନୁସରଣ କରିନାହାଁନ୍ତି । ନିଜ ବ୍ୟକ୍ତିତ୍ୱରେ ତାହା ଯେପରି ପ୍ରସ୍ତାବ ଆଣିଛି କବି ସେହିଭଳି ପ୍ରକାଶ କରିଛନ୍ତି । କବିଙ୍କର ଜୀବନ ପରିବର୍ତ୍ତନ ହୋଇଛି, କିନ୍ତୁ ତାଙ୍କ ବ୍ୟକ୍ତିତ୍ୱର ପରିବର୍ତ୍ତନ ହୋଇନାହିଁ । ଜୀବନର ଶେଷପର୍ଯ୍ୟନ୍ତ ଏହା ଅବ୍ୟାହତ । ଜୀବନର ପରିବର୍ତ୍ତନ ସଙ୍ଗେ ସଙ୍ଗେ କବିଙ୍କର ବ୍ୟକ୍ତିତ୍ୱ ଯଦି ପରିବର୍ତ୍ତନ ହୋଇଥାନ୍ତା, ତାହେଲେ ପ୍ରେମ ଓ ପ୍ରଣୟ ମୂଳକ କବିତାରେ ଯେଉଁ ଉଦାମ ଅନୁଭବ ପ୍ରକାଶିତ ତାହା ହୁଏତ ଧର୍ମ ଓ ଦର୍ଶନ ସମ୍ପର୍କିତ କବିତାରେ ପ୍ରକାଶ ପାଇ ନଥାନ୍ତା । ବ୍ୟକ୍ତିତ୍ୱର ପୁଟ ପାଇ ସ୍ୱକୀୟ କାବ୍ୟ ପରିଧି ଭିତରେ କବି ଜୀବନ ଛନ୍ଦମୟ ହୋଇଉଠିଛି । ଆବେଗର ସ୍ୱତଃସ୍ଫୂର୍ତ୍ତିତା ମଧ୍ୟରେ ଜୀବନାନୁଭୂତିଗତ ସତ୍ୟର କାବ୍ୟିକ ଉପସ୍ଥାପନ ମାନସିଂହଙ୍କ କାବ୍ୟ ପ୍ରତିଭାର ଲକ୍ଷଣ । ଏହାହିଁ ପ୍ରତିପନ୍ନ କରେ ତାଙ୍କ କାବ୍ୟବାଣୀ ସହ ଜୀବନବାଣୀର ଗଭୀର ସଂପୃକ୍ତି ।

କୃତ୍ରିମ ଭାବଧାରାଠାରୁ ପ୍ରତିଷ୍ଠିତ ଦୂରତାରେ ସର୍ଜନାତ୍ମକ ସୃଷ୍ଟି (creative literature) ଆତ୍ମପ୍ରକାଶ କରେ । ସ୍ୱଚ୍ଛ ଅଭିବ୍ୟକ୍ତିରେ ଏ ଶ୍ରେଣୀୟ ସୃଷ୍ଟିର ସାର୍ଥକତା । ଏହି ଅଭିବ୍ୟକ୍ତି ସର୍ବଦା ଅନୁଭୂତି ପୁଷ୍ଟ । କୌଣସି ସ୍ରଷ୍ଟା ନିଜ ସୃଷ୍ଟିରେ ତା'ର ଅନୁଭୂତିଗୁଡ଼ିକୁ ପ୍ରକାଶ କରି ନ ପାରେ, କିନ୍ତୁ ଅନୁଭୂତିଭିତ୍ତିକ ନିଜ ଜୀବନର ସ୍ୱରକୁ ତାର ସୃଷ୍ଟି ଭିତରୁ ବାଦ୍ ଦେଇପାରେ ନାହିଁ । ତେଣୁ ଜଣେ ସାଧାରଣ ବ୍ୟକ୍ତି ପକ୍ଷେ ଉତ୍କୃଷ୍ଟ ସୃଷ୍ଟି ଅସମ୍ଭବ । ସାଧାରଣତଃ ଆବେଗାତ୍ମକ ରଚନାଗୁଡ଼ିକରେ ଏ ଧର୍ମ ଚିର ଅବ୍ୟାହତ । ତେଣୁ ଜଣେ ସାର୍ଥକ ସାହିତ୍ୟିକର ଜୀବନ ତତ୍ତ୍ୱ ଅଭିଜ୍ଞତା ଚର୍ଚ୍ଚିତ । Coleridge କହନ୍ତି "What is poetry is so nearly the same question with, What is a poet ? That the answer to the one is involved in the solution of the other. For it is a diction resulting from the poetec genius itself, which susstains and modifies the images, thoughts and the emotions of the poets, own mind."3 ତେଣୁ କୌଣସି ସୃଷ୍ଟିକୁ ବିଶ୍ଳେଷଣ କରିବା ପୂର୍ବରୁ

3.T. Colevidge-Bioqraphia Literaria, English Critical 1age 196 Texts-Ed-D.J. Enright Oxford University Press 1962.

ତାର ସ୍ରଷ୍ଟା ଜୀବନର ସ୍ୱତନ୍ତ୍ର୍ୟ ସାଧାରଣ ଜୀବନଠାରୁ କେତେ ତାହା ସର୍ବାଂଶରେ ବିଚାର୍ଯ୍ୟ ।

ଦୁନିଆଁ ଭିତରେ ନିଜକୁ ଖୋଜିବା, ପ୍ରତ୍ୟେକ ଆତ୍ମସଚେତନ ମଣିଷ ମନର ପ୍ରବୃତ୍ତି । ଜୀବନର ଦରଫୁଟା ବୟସରେ ପିତାମାତାଙ୍କ ସହିତ ପାରିବାରିକ ସଂଯମତା ନେଇ ଅନେକ ଜୀବନ ସଙ୍କୁଚିତ ହୋଇଆସେ । ତେଣୁ ସେମାନେ ମଣିଷ ହୋଇ ଦୁନିଆଁ ଦୁଆରେ ଠିଆହେବା ପୂର୍ବରୁ ସମାଜର ପ୍ରତିଟି ପାରମ୍ପରିକ ମୂଲ୍ୟବୋଧକୁ ସ୍ୱୀକାର କରି ସାରିଥାଂତି । କେବଳ ଦୁନିଆର ଚଉଦାଣ୍ଡରେ ଅଣନିଶ୍ୱାସୀ ହୋଇ ଦୌଡ଼ିବା ସାର ହୁଏ । ଅନ୍ୟମାନଙ୍କ ଭିଡ଼ ଭିତରେ ମହଣରେ ନିଜକୁ ମିଶାଇ ଦିଅଂତି । ସମସ୍ତଙ୍କ ସ୍ୱର ଭିତରେ ନିଜ ସ୍ୱରକୁ ହଜାଇ ଦିଅଂତି । ଦୁନିଆରେ ମିଥ୍ୟା କଣ, ସତ୍ୟ କଣ, ବିଚାର କରିବାକୁ ସେମାନଙ୍କର ଅବକାଶ ନ ଥାଏ ।

ସମାଜର ପାରମ୍ପରିକ ବିଚାରବୋଧକୁ ଭୁଲିଯାଇ ଜୀବନର ଆତ୍ୟ ପଥରେ ନିଜକୁ ନିରୀକ୍ଷଣ କରିବା ହିଁ ଏକ ପ୍ରଗତିଶୀଳ ବ୍ୟକ୍ତିତ୍ୱର ପରିଚାୟକ, ଯାହାକି ଭବିଷ୍ୟତର ଅନ୍ଧକାର ଭିତରେ କଳ୍ପନାର ଚକ୍ଷୁ ଘୂରାଇ ଅଣ୍ଡାଳିବାପାଇଁ ସାହାଯ୍ୟ କରେ । ବର୍ତ୍ତମାନରେ ଉପସ୍ଥିତ ଥାଇ ସେଇ ବ୍ୟକ୍ତି ଭବିଷ୍ୟତ ପାଇଁ ସମଗ୍ର ଜୀବନ ପଥରେ କାଳ୍ପନିକ ପିରାମିଡ଼୍ ଗଢ଼େ । ଯାହା ଅନ୍ୟ ଜୀବନ-ଠାରୁ ସୁନ୍ଦର ଓ କମନୀୟ ବ୍ୟକ୍ତିଗତ ଜୀବନାଦର୍ଶକୁ ଏକାନ୍ତ ପାଥେୟ କରି ଗୋଟିକ ପରେ ଗୋଟିଏ ସେ ଆୟତ୍ତ କରି ଚାଲେ । ଏଥିପାଇଁ ସେ କୌଣସି ପ୍ରତିଷ୍ଠିତ ଆଦର୍ଶର ଅନ୍ଧାନୁସରଣ କରେନାହିଁ । ଜୀବନ ପଥରେ ପ୍ରତ୍ୟେକ ଚିହ୍ନା ଅଚିହ୍ନା ମୁହଁଗୁଡ଼ିକୁ ସେ ତନ୍ନ ତନ୍ନ କରି ଦେଖିନିଏ । ସେ ଦେଖିବାରେ କେମିତି ଏକ ଭିନ୍ନତା ଥାଏ । ଯାହା ସତ୍ୟ, ଶାଶ୍ୱତ ଓ ଚିରନ୍ତନ ତାକୁ ହିଁ ହୃଦୟ ସହିତ ମିଶାଇ ଦିଏ । ଅନ୍ୟଗୁଡ଼ିକ ପ୍ରତି ରହିଯାଏ ନିର୍ଭିକ କଟାକ୍ଷ । କବି ମାନସିଂହଙ୍କ ଜୀବନର ଏହା ଏକ ଲକ୍ଷଣୀୟ ବୈଶିଷ୍ଟ୍ୟ । କୁଳୁକୁଳୁ ନିନାଦିନୀ ଶୁଭ୍ର ତଟିନୀଟିଏ ପରି ନିଜର ପିତାମାତା, ପାହାଡ଼ ବଣକୁ ପଛରେ ପକାଇ ସେ ସ୍ରୋତ ମୁଖର । ଏଇ ଦେଶର ମାଟି ଗୋଡ଼ି ପଥରକୁ ହୃଦୟରେ ମିଶାଇ ସେ ଛଳଛଳ ହୋଇ ଉଠିଛି । ଯେଉଁଠି କୌଣସି ପ୍ରତିବନ୍ଧକ ଦେଖାଦେଇଛି ସେଠି ଚଡ଼୍ ଚଡ଼୍ ଶୁଭିଛି । କିନ୍ତୁ ଅଟକି ଯାଇନି । ପରନ୍ତୁ ଆଉ ଏକ ଅଜଣା ଅଘାତର ଅପେକ୍ଷାରେ ବାଟ କାଟି ଚାଲିଯାଇଛି । ଏହି ଗତି ଭିତରେ ତାର ମାଟି ଗୋଡ଼ିର ସଙ୍ଗୀତ ଶେଷକୁ ଅନନ୍ତ ମହୋଦଧିରେ ଏକାତ୍ମ ହୋଇଛି । ଯଥାର୍ଥରେ ସେ ଜୀବନ ଛନ୍ଦମୟ ବୈଚିତ୍ର୍ୟପୂର୍ଣ୍ଣ ଶତବର୍ଣ୍ଣର ଭର୍ଣ୍ଣିକା ।

କବି ମାନସିଂହ ଏକ ନିର୍ଭୀକ ମାନସିକତା ନେଇ ଜୀବନ ପଥରେ ପଦ ଚାଳିଥିଲେ । ଆଖି ଆଗରେ ଭରି ରହିଥିଲା ତାଙ୍କର ଅସୁମାରି ଆଶା । ଦୁନିଆ ଭିତରେ ନିଜକୁ ପ୍ରତିଷ୍ଠା କରିବାର ବାସନା ତାଙ୍କର କୈଶୋରାବସ୍ଥାରୁ ଦେଖା ଦେଇଥିଲା । ସେତେବେଳେ ସେ ଏହି ଜଟିଳ ସମାଜର କୁଟୀଳ ଛନ୍ଦକୁ ବୁଝିପାରି ନ ଥିଲେ । ନିଜର ପରିପୋଷିତ ପିପାସାର ପରିତୃପ୍ତି ପାଇଁ ପ୍ରୟାସୀ ହେଲାବେଳେ ଏ ସମାଜଦ୍ୱାରା ବାରମ୍ବାର କ୍ଷତବିକ୍ଷତ ହୋଇ ସରଳ କବି ପ୍ରାଣ ହୋଇଉଠିଛି ଆଘାତ ଜର୍ଜରିତ । ଭବିଷ୍ୟତର ସକଳ ସ୍ୱପ୍ନ ତାଙ୍କର ନିଷ୍ପ୍ରଭ ହୋଇ ଆସିଛି । ବିରାଟ ଦୁନିଆରେ ନିଜର ସତ୍ତା ହଜିଯାଉଥିବାର ସେ ଅନୁଭବ କରିଛନ୍ତି । ସେତିକିବେଳେ ନିଜକୁ ସେ ହେୟ ମନେ କରିଛନ୍ତି । ନିଜର ଅକର୍ମଣ୍ୟତାକୁ ମର୍ମେ ମର୍ମେ ଅନୁଭବ କରି ବିଳପି ଉଠିଛନ୍ତି— "ବିଧାତା ତମେ ମତେ ଜନ୍ମ ଦେଇଥିଲ କାହିଁକି ? ମୁଁ କେଉଁ କାମକୁ ଉପଯୁକ୍ତ ? ଏପରି ଏକ ଅକର୍ମଣ୍ୟ ଜୀବ ସଂସାରକୁ ପଠେଇବାର କି ଦରକାର ଥିଲା ?"୪

ଜୀବନର ଏହି ନୈରାଶ୍ୟ ଭିତରେ କବି ନିଜର ଆତ୍ମ ସମୀକ୍ଷା କରି ବସିଛନ୍ତି । ନିଜ ଜୀବନର ପ୍ରତିଟି ଆଦର୍ଶକୁ ସୂକ୍ଷ୍ମ ଦୃଷ୍ଟିରେ ନିରୀକ୍ଷଣ କରିଛନ୍ତି । ପରିଶେଷରେ ହୃଦୟଙ୍ଗମ କରିଛନ୍ତି ସେ କେତେଦୂର ସତ୍ୟ ଓ ବାସ୍ତବ । ଯାହାକୁ ଏ ସମାଜ ସ୍ୱୀକୃତି ନ ଦେଲେ ମଧ୍ୟ ସେ ଜୀବନର ମୂଳମନ୍ତ୍ର ଭାବେ ଗ୍ରହଣ କରି ନେଇଛନ୍ତି । କେବଳ ସେତିକିରେ ସେ ନୀରବ ରହିନାହାନ୍ତି; ପରନ୍ତୁ ନିଜର ଜୀବନାଦର୍ଶ ପ୍ରତି ଦୁନିଆର ଦୃଷ୍ଟି ଆକର୍ଷଣ କରିଛନ୍ତି । କବିଙ୍କ ମତରେ—"ନିଜର ସମସ୍ତ ଅକର୍ମଣ୍ୟତା ଠାରେ ଜୀବନରେ ଯାହା ମହତ୍, ଯାହା ସୁନ୍ଦର, ଯାହା ସତ୍ୟ ମୁଁ କିନ୍ତୁ ରହିଆସିଛି କେବଳ ତାହାର ହିଁ ଉପାସକ ଓ ଭକ୍ତ । କୌଣସି ଗୋଷ୍ଠୀ, ଦଳ ବା 'ଇଜିମ୍'ର ପ୍ରଚାରକ ଭାବେ ଠିଆ ହେବା ମୋର ସ୍ୱଭାବ ବିରୁଦ୍ଧ ।" ୫

ଏହି ଅଭିବ୍ୟକ୍ତି ଭିତରେ ନିର୍ଭୀକତାର ସ୍ୱର ସ୍ପଷ୍ଟ । ସମାଜର ଏଥି ପ୍ରତି କେତେଦୂର ଆନ୍ତରିକତା ରହିବ ତାହା ତାଙ୍କ ବିଚାର ବିବେଚନାର ବହିର୍ଭୂତ ସମସ୍ୟା । କିନ୍ତୁ ସିଏ ନିଜ ଜୀବନର ଚିରନ୍ତନତା ସହ ସମାଜର କେତେକ

୪) ମାୟାଧର ମାନସିଂହ—ମୁଁ କାହିଁକି ଲେଖେ ? ଉତ୍ତର—୧୪/୧୮ ସଂଖ୍ୟା, ତା ୧-୭-୫୦ ।

୫) ମାୟାଧର ମାନସିଂହ—ମୁଁ କାହିଁକି ଲେଖେ ? ଉତ୍ତର—୧୪/୧୮ ସଂଖ୍ୟା, ତା ୧-୭-୫୦ ।

ଶାଶ୍ୱତ ମୂଲ୍ୟବୋଧର ତାତ୍ତ୍ୱିକ ସମବାୟ ସୃଷ୍ଟି କରିଛନ୍ତି । ତେଣୁ କବି କହନ୍ତି—"×××× ମୁଁ ଗାନ୍ଧି ଗୋପବନ୍ଧୁଙ୍କର ସ୍ତାବକ । ମୁଁ ସେମାନଙ୍କର ଦଳରେ ନୁହେଁ ବା ସେମାନଙ୍କର କର୍ମ ବା ଚିନ୍ତାଧାରା ସମ୍ବନ୍ଧରେ ମୋର କୌଣସି ମତାନ୍ଧତା ନାହିଁ । ଦରକାରବେଳେ ସେମାନଙ୍କର କର୍ମ ବା ଚିନ୍ତାଧାରାର ସମାଲୋଚନା କରିଛି ଓ କରିପାରେ । କିନ୍ତୁ ତାଙ୍କ ବ୍ୟକ୍ତିତ୍ୱ ନିକଟରେ ମୁଁ ନତମସ୍ତକ କାରଣ ସେହି ବ୍ୟକ୍ତିର ଭିତରେ ହିଁ ମୁଁ ସତ୍ୟ ଶିବ, ସୁନ୍ଦରର ବିକଚ ବିକାଶ ଦେଖିବାକୁ ପାଏ ।" ୬ ।

ତେଣୁ କବି ମାନସିଂହ ଜଣେ ଏକକ ବ୍ୟକ୍ତିତ୍ୱ (Unique personality) ଭାବେ ଆମ ଆଗରେ ଆତ୍ମପ୍ରକାଶ କରିଛନ୍ତି । ତାଙ୍କର ଏହି ବ୍ୟକ୍ତିକ ସ୍ୱାତନ୍ତ୍ର୍ୟ ତାଙ୍କୁ ସାମାଜିକ ବିଧିବ୍ୟବସ୍ଥାଠାରୁ ଭିନ୍ନ କରି ଦେଇଛି । ଫଳରେ ସମାଜ ଦୃଷ୍ଟିରେ ସେ ହୋଇଛନ୍ତି ଏକ ବିମୂର୍ତ୍ତ ରୂପାୟନ । କିନ୍ତୁ ସେ କୌଣସି ଧାରାବାହିକତା ଭିତରେ ନିଜକୁ ଛନ୍ଦି ପାରି ନାହାନ୍ତି । ଜୀବନର ଶେଷ ପର୍ଯ୍ୟନ୍ତ ନିଜର ନୈତିକ ମାନଦଣ୍ଡରେ ଦୁନିଆକୁ ମାପି ଚାଲିଛନ୍ତି ।" ଜୀବନର ବହୁନିଗ୍ରହ ମଧ୍ୟରେ ସେ ଥିରି ନିର୍ଭୀକ । ସମାଜ,ସଂସାର ସରକାରୀ ସଂସ୍ଥା କେଉଁଠି ହେଲେ ସେ ଗତାନୁଗତିକ ଧାରାରେ ବାନ୍ଧିହୋଇ ରହିବା ଲୋକ ନୁହଁନ୍ତି । ସେ ଯାହା ଭଲ ବୋଲି ଭାବନ୍ତି, କରନ୍ତି । ତାଙ୍କ କଥା ଅପେକ୍ଷା ତାଙ୍କ କଲମ ବେଶି ଟାଣ ; ସେଥିପାଇଁ ଘରର ନିଭୃତ କୋଠରୀରେ ବସି ତାହାରେ ସେ ବେଶ୍ ଚହଳ ସୃଷ୍ଟି କରି ପାରନ୍ତି ।" ୭ । ଏଥିପାଇଁ ଜୀବନର ବହୁ କ୍ଷେତ୍ରରେ ସେ ନିର୍ଯାତିତ ହୋଇଛନ୍ତି । କିନ୍ତୁ ସମାଜର ଚାହିଦା ଅନୁଯାୟୀ ନିଜକୁ ସଂଶୋଧନ କରି ନାହାଁନ୍ତି । କାରଣ ନିଜ ମତାମତ ପ୍ରତି ତାଙ୍କଠାରେ ଥାଏ ଗଭୀର ଆନ୍ତରିକତା ।

ସମାଜ ସହ କବିଙ୍କର ଏହି ମାନସିକ ତାରତମ୍ୟ ତାଙ୍କ ବ୍ୟକ୍ତିତ୍ୱକୁ ବହୁଳଭାବେ ପ୍ରଭାବିତ କରିଥିଲା । ତେଣୁ ଉତ୍ତର ଜୀବନରେ ଏହା ବହୁ ବିଚିତ୍ର ସମ୍ଭାବନାର ସମ୍ଭାର ନେଇ ଆତ୍ମପ୍ରକାଶ କରିଛି । କେତେବେଳେ ସେ ହସ ଅଶ୍ରୁର ତିକ୍ତ ମଧୁର ପରିଣତି,ପୁଣି କେତେବେଳେ ହା-ହତାଶର ଯନ୍ତ୍ରଣା-

---

୬) ମାୟାଧର ମାନସିଂହ—ମୁଁ କାହିଁକି ଲେଖେ ? ଉତ୍ତର ୧୪/୧ମ ସଂଖ୍ୟା ତା ୧-୭-୫୦ ।

୭) ଗୋଲୋକ ବିହାରୀ ଧଳ – ଶିକ୍ଷାବିତ୍ ମାନସିଂହ—ମାନସିଂହ ସୃଷ୍ଟି ଓ ସମୀକ୍ଷା ପୃଷ୍ଠା ୨୪୫, ୧୯୭୮ ।

ମନ୍ଦ୍ର ଚିତ୍କାର । ଏହା ସାଧାରଣରୁ ଭିନ୍ନ ହେଲେ ବି ଅତ୍ୟନ୍ତ ହୃଦୟସ୍ପର୍ଶୀ । ଶତ ସଂଘାତ ପୂର୍ଣ୍ଣ ଏହି ଦ୍ୱନ୍ଦ୍ୱମୟ ଜୀବନବାଣୀ ବୈଚିତ୍ର୍ୟ ବିମଣ୍ଡିତ । ମହାପାତ୍ର ନୀଳମଣି ସାହୁଙ୍କ ଭାଷାରେ—"ଆପଣଙ୍କର ବ୍ୟକ୍ତିତ୍ୱ କି ଅଦ୍ଭୁତ ! କେତେ ବିରୋଧାଭାସୀ ବୈଚିତ୍ର ଚରିତ୍ରବୃତ୍ତିରେ ଗୋଳିଆମିଶା ବ୍ୟକ୍ତିତ୍ୱ ଆପଣଙ୍କର ! କେତେ ସୁମଧୁର ! କେତେ ଉଦ୍ଭଟ ! ଆଉ କେତେ ଆକର୍ଷକ !" ୮ । ତେଣୁ ଏ ତରଙ୍ଗାୟିତ ଜୀବନର ଅଭିବ୍ୟକ୍ତି ସମସ୍ତଙ୍କର ପ୍ରାଣରେ ଉଦ୍‌ବେଳନ ସୃଷ୍ଟି କରିବା ପାଇଁ ମହତରେ ସମର୍ଥ ହୋଇଛି ।

କବି ଜୀବନର ସକଳ ବ୍ୟର୍ଥତା ସତ୍ତ୍ୱେ କେବଳ ଏତିକି ହିଁ ପ୍ରଶାନ୍ତି । କବିର ବୈଫଲ୍ୟମୟ ଜୀବନର କରୁଣ ପରିଣତି ଅନ୍ୟମାନଙ୍କ ହୃଦୟରେ ଅନୁରଣିତ ହୋଇଉଠିଛି—ଏହା ହିଁ ବ୍ୟଥିତ କବି ପ୍ରାଣର ଚରମ ସାଫଲ୍ୟ । ତେଣୁ କବି ତାଙ୍କ ବ୍ୟର୍ଥ ପ୍ରାଣକୁ ପ୍ରବୋଧି କହିଛନ୍ତି ...."ବିଧାତା ର ଚତୁର ସୃଜନ ବିଧିରେ ମୋ ଜୀବନରେ ନ ମିଳିବା ହିଁ ହୋଇଛି ପରେ ବହୁ ମିଳିବାର ମୂଳ ହେତୁ । ଲେଖକର ତେଣୁ କ୍ରମେ କ୍ରମେ ନିଜ କୃତିତ୍ୱର ବିଶ୍ୱାସହାନୀ ଓ ଅଜ୍ଞାତ ହସ୍ତର ପରିଚାଳନାରେ ଅନ୍ଧୀରରୁ ଗଭୀରତର ବିଶ୍ୱାସ ବଢ଼ିଚାଲିଛି ।" ୯ । ତେଣୁ କବି ଗଭୀର ଆବେଗରେ ନିଜ ପ୍ରାଣର ସଙ୍ଗୀତ ଦୋଳିକ ପରେ ଗୋଟିଏ ଗାଇ ଯାଉଛନ୍ତି

ବେଦନା ବିଧୁର ଜୀବନର ଖଣ୍ଡି ଖଣ୍ଡି ଅନୁଭୂତିବୃତ୍ତିକୁ ପ୍ରାଣର ଭାଷା ମାଧ୍ୟମରେ କବି ପ୍ରକାଶ କରି ଯାଇଛନ୍ତି । ତାଙ୍କ ସମଗ୍ର ଜୀବନର ଗତି ଏକ ସ୍ରୋତମୁଖର ତଟିନୀଟିଏ ପରି ଛଳଛଳ । ତାରି ଭିତରେ ଭିଜି ରହିଛି ତାଙ୍କ ପରିଚିତ ପୃଥିବୀର ସଙ୍ଗୀତ—ଜେଉ ଜେଉକା ଜୀବନର ପ୍ରାଣସ୍ପର୍ଶୀ ଗାଥା ।" ତେଣୁ ମାନସିଂହଙ୍କ ଲେଖନୀରେ ସାହିତ୍ୟ ସାଧନା ଯଥାର୍ଥରେ ହୋଇଉଠିଛି 'ସାହିତ୍ୟ' । ଯେହେତୁ ଏହା ତାଙ୍କ ଜୀବନ ସହିତ ଛାଇପରି ଅବିଚ୍ଛିନ୍ନ ଭାବରେ ଗତିକରି ଚାଲିଛି ।" ୧୦ । ଏହି ଦସ୍ତରଙ୍ଗୀ ଜୀବନର ଚିତ୍ର ତାଙ୍କର କାବ୍ୟ ପରିଧି ଭିତରେ ବିଚ୍ଛୁରିତ ।

---

୮) ମହାପାତ୍ର ନୀଳମଣି ସାହୁ—ଗୁଣ ସୁମରି ହୁଅନ୍ତି ବିକଳ ମାନସିଂହ-ପରିକ୍ରମା, ୧୯୭୯ ପୃଷ୍ଠା ୨୩୭,

୯) ମାୟାଧର ମାନସିଂହ—ଶିକ୍ଷାବିତର ଗାଥା, ପୃଷ୍ଠା ୪୫ ।

୧୦) ଦାଶରଥି ଦାସ୍—ନିର୍ଝରର ଉନ୍ମାଦ ମାନସିଂହ, ମାନସିଂହ ସୃଷ୍ଟି ଓ ସମୀକ୍ଷା ୧୯୭୮, ପୃଷ୍ଠା ୫୬ ।

କବିଙ୍କର ବ୍ୟକ୍ତିଗତ ସ୍ୱାତନ୍ତ୍ର୍ୟ ହିଁ ତାଙ୍କ ସମଗ୍ର କାବ୍ୟ ଜଗତର ପ୍ରଧାନ ଉପଜୀବ୍ୟ । କର୍କଶ ବନ୍ଧୁର ଜୀବନପଥରେ ସେ ଯେଉଁ ସ୍ୱାତନ୍ତ୍ର୍ୟ ନେଇ ଆଗେଇ ଆସିଛନ୍ତି ତାହାହିଁ ତାଙ୍କ କାବ୍ୟ କବିତାରୁ ଆଭାସିତ । ଜାଗତିକ ସକଳ ବସ୍ତୁ ଏକ ବ୍ୟକ୍ତିଗତ ଦୃଷ୍ଟିଭଙ୍ଗୀ ମାଧ୍ୟମରେ ତାଙ୍କ କାବ୍ୟ କବିତାରେ ପ୍ରକାଶିତ । ଯାହାର କାବ୍ୟିକ ଆବେଦନ ସାଧାରଣରେ ଗ୍ରାହ୍ୟ । କବି ସୀତାକାନ୍ତଙ୍କ ମତରେ—"ସେ ଓଡ଼ିଆ କାବ୍ୟ ଜଗତକୁ ଆସିଥିଲେ ଗୋଟିଏ ନୂଆ ସ୍ୱର ନେଇ । ସେ ସ୍ୱର ଥିଲା ଅତି ବ୍ୟକ୍ତିଗତ ଅନୁଭବର, ସ୍ନେହ ଓ ପ୍ରେମର ସୁନ୍ଦରତ, ଉପାସନାର, ମାପଚୁପ, ଢାଣ୍ଡୁଢାଣ୍ଡ, ତଟିତଖି ଚଳିବା ଦୁନିଆଠାରୁ ସେ ସ୍ୱର ଥିଲା ଖୁବ୍ ଦୂରରେ । ସେ ସ୍ୱର ଥିଲା ଆନ୍ତରିକତାର, ଉଦ୍ଦାମ ଅନୁଭବର, ସଂପୂର୍ଣ୍ଣ ନିର୍ଭୀକତାର—ଖାଲି ପ୍ରକୃତିର ବର୍ଣ୍ଣନା ନୁହେଁ । ବସ୍ତୁ ବିକ୍ଷଣା ନୁହେଁ, ନିଜ କଥା, ନିଜେ ଅଙ୍ଗେ ନିଭେଇଥିବା କଥା, ଇନ୍ଦ୍ରିୟାନୁଭୂତିର କଥା, ଏଇ ନଶ୍ୱର ଦେହର କଥା ।" ୧୧ ।

ମାନସିଂହଙ୍କର ସୃଷ୍ଟି ସମ୍ଭାର ପ୍ରତି ସାମଗ୍ରିକ ଦୃକ୍ପାତ କଲେ ଜଣାଯାଏ ତାହା ତାଙ୍କ ବ୍ୟକ୍ତିଗତ ଜୀବନାନୁଭୂତିର ଏକ ନିଚ୍ଛକ ପ୍ରତିଲିପି । ତାଙ୍କ କବିତାର ସ୍ୱର ପାରମ୍ପରିକ ମୂଲ୍ୟବୋଧଠାରୁ ଏକ ପ୍ରତିଷ୍ଠିତ ଦୂରତାରେ ଅବସ୍ଥିତ । ଶିଳ୍ପକଳା, ସଂସ୍କୃତି-ସଭ୍ୟତା, ଧର୍ମ ଦର୍ଶନ, ପ୍ରେମ ପ୍ରଣୟ ଇତ୍ୟାଦି ବିଷୟଗୁଡ଼ିକ ତାଙ୍କର ଆନ୍ତରିକତା ପାଇ ଅତୀବ ରସଘନ । ଯାହାକି ତାଙ୍କର ବୈଫଲ୍ୟମୟ ଜୀବନର ଗୋଟିଏ ଗୋଟିଏ ପ୍ରାଣସ୍ପର୍ଶୀ ସଙ୍ଗୀତ । ଏଥିରେ କବିଙ୍କର କୃତ୍ରିମତା ଆଦୌ ପରିଦୃଷ୍ଟ ହୁଏ ନାହିଁ । ହୃଦୟର ଗଭୀରତମ ପ୍ରଦେଶଠାରୁ ଏହା ସ୍ୱତଃ ନିସୃତ । ନୈରାଶ୍ୟମୟ ଜୀବନର ଯେଉଁ ଗଭୀର ଆତ୍ମସମୀକ୍ଷା, ଏହା ତାର ସାର୍ଥକ ଫଳଶ୍ରୁତି, ଯେଉଁଥିରେ ଦେଖାଯାଏ ସତ୍ୟ ଶିବ, ସୁନ୍ଦରର ବିକଚ ବିକାଶ । ତେଣୁ ଶାଶ୍ୱତ, ଚିରନ୍ତନତାର ଏହା ଯଥାର୍ଥ ଅଭିବ୍ୟକ୍ତି । ଏହି ଅଭିବ୍ୟକ୍ତି ଉତ୍କଳର ପାଠକ ପାଠିକାଙ୍କ ସହ ହାର୍ଦ୍ଦିକ ସମ୍ପର୍କ ସ୍ଥାପନ କରିବାକୁ ସମର୍ଥ ।

—o—

ଗ୍ରାମ—ସିଳନ୍ଦୀ
ପୋ: ଅ:—ଇନ୍ଦ୍ରସିଂହ
ଭାୟା—ତିରଣ, କଟକ ।

---

୧୧) ସୀତାକାନ୍ତ ମହାପାତ୍ର—ଧୂସର କବି—ମାନସିଂହ ପ୍ରତିକ୍ରମା, ୧୫୩, ୧୯୭୯ ।

■ ଶୈଳେନ୍ଦ୍ର କୁମାର ଦ୍ୱିବେଦୀ

# ଆଦିମା

ଆଦିମା ବସିଛି, ଇଭ୍ ପରି ....

ନିଆଁ ଜଳୁଛି, ନିଆଁ ପରି .....

ପିଲାଏ ବସିଛନ୍ତି ଜୋକ ପରି .....

ଆଦିମା ବସିଛି ଆଦିମା ପରି ..... / ଅସୁରୁଣୀ ପରି .....

ଆଦିମାକୁ ଦେଖିଲେ ମନେହୁଏ, ପୃଥିବୀର ଉତ୍ପତ୍ତିବେଳରୁ ହିଁ ସିଏ ସେମିତି ବସିରହିଛି । ଆଶ୍ଚର୍ଯ୍ୟ ଧରଣର ଗୋଟାଏ ଅନୁଭୂତି ଆସେ ତାକୁ ଦେଖିଲେ ..... ଆଖି ଦି'ଟା ଶେତା ପଡ଼ିଗଲାଣି । ବିକଳତାର ଏକାନ୍ତ ଅବତାର ସତେ ଅବା (ତେବେ ବି ସେମାନଙ୍କୁ ଠିକ୍ ଠିକ୍ ବିଶ୍ଳେଷଣ କରିହେବନି) ବାଳ ସବୁ ପାଚିନି, ହେଲେ ଅଧିକାଂଶ ଉପୁଡ଼ିଗଲେଣି, ଅବଶିଷ୍ଟାଂଶ ଶିବଙ୍କର ପୌରାଣିକ ଜଟାର କିୟଦଂଶ ପରି ମନେହୁଏ,ପାଟିରେ ସବୁଯାକ ଦାନ୍ତ ଅଛନ୍ତି ସେମାନଙ୍କ ସ୍ଥିତି କିନ୍ତୁ ସ୍ୱୀକାର କରାଯାଇପାରୁନି । ଗାଲ ପଶିଗଲାଣି । ଚମରେ ଭାଙ୍ଗ ସବୁ ସ୍ପଷ୍ଟ । ଶିଳ୍ପୀ ଯେମିତି ପେଣ୍ଟିଂ ଉପରେ ଭାଙ୍ଗଗୁଡ଼ିକ ସ୍ପଷ୍ଟ କରିବା ପାଇଁ ଦି'ତି'ଥର ରଙ୍ଗ ଦିଏ । ଖୁବ୍ ଛୋଟ ଲୁଗା ଖଣ୍ଡେ, ଲୁଗା ନୁହେଁ ତ କନା ଖଣ୍ଡେ ପିନ୍ଧିଛି । ପବନରେ କନାଟା ମଝିରେ ମଝିରେ ପ୍ରସ୍ତୁତ ହେଉଛି ଉଡ଼ିଯିବା ପାଇଁ ତା ଦେହ ଛାଡ଼ି (ଦୀର୍ଘଦିନର ସଞ୍ଚିତ ମଇଳାଗୁଡ଼ାକୁ ଲୁଗାଟା ପବନ ଦେହରେ ମିଶେଇ ଦେବାକୁ ଚାହେଁ ..... )। ଆଦିମା କିନ୍ତୁ କୌଣସି ପ୍ରକାର ଗଣ୍ଠିଟାଏ ପକାଇ ଦେଇଛି ଅଣ୍ଟାରେ ଓ କନାଟାକୁ ଜୋର୍‌କରି ଅଟକାଇ ରଖିଛି । ବେଳେବେଳେ କାନିଟା (କାନି କହିଲେ ଅତ୍ୟୁକ୍ତି ହେବ ବୋଧେ) କାନ୍ଧରୁ ଖସି ପଡ଼ୁଛି । ଶୁଖି ଯାଇଥିବା ସ୍ତନ ଦି'ଟା ଆତ୍ମପ୍ରକାଶ କରୁଛନ୍ତି ଅନାୟାସରେ । ଆଦିମାର ଏଥିପ୍ରତି ଲକ୍ଷ୍ୟ ନାହିଁ । ସିଏ ଏବେ ପର୍ଣ୍ଣୋଗ୍ରାଫିକ୍ ଲିଟରେଚର୍‌ର କୌଣସି ଏକ ସଫଳ ଚିତ୍ର ବ୍ଲୁଫିଲ୍ମର ସଫଳ ନାୟିକା । ଆଦିମା ଚାରିପାଖରେ ଚାରେଟି ପିଲା/ଚାରେଟି ନିଖୋଜ ବାପଙ୍କର ଦୁର୍ବଳ ଦାୟାଦ । ନିଆଁ ପୁଉଁଛନ୍ତି ସମସ୍ତେ । ଷ୍ଟେସନ ପାଖରେ ଭୀଷଣ ଶୀତ । ଓ୍ୱେଟିଂ ରୁମ୍‌ରେ, ବାରଣ୍ଡାରେ ସମସ୍ତେ ଶୀତରୁ ଟିକେ ରକ୍ଷା ପାଇବା ପାଇଁ

ଖୁଡ଼ି ହୋଇ ରହିଛନ୍ତି । ଅଦିମାକୁ ସେଇ ତରବୁଢ଼ା ରିକ୍‌ସାବାଲା (ଯିଏ ଥରେ ବାପା ହେବାର ଚେଷ୍ଟା କରି ହୋଇପାରି ନଥିଲା) ଡାକୁଥିଲା ବାରଣ୍ଡାକୁ ଯିବା ପାଇଁ । ଅଦିମା ଏକା ଏଁଲେ ଗୁଲିଯାଇଥା'ନ୍ତା, ହେଲେ ପିଲା ଗୁଡ଼ିଟା ଅଛଂତି .... । ଗୋଟାଏ ପିଲା କେଁ କେଁ କାନ୍ଦିଉଠିଲା । ଅଦିମା ଠୋ-ଠୋ ଦି' ଚଟକଣା ବସେଇଦେଲା ତା ଗାଲରେ । ପିଲାଟା ତତ୍‌କ୍ଷଣାତ୍ ନୀରବ ରହି-ଗଲା । ଏବା ସାନଟା ଏଥର କାନ୍ଦିବାର ଉପକ୍ରମ କରୁଥିଲା । ଅଦିମା ତାକୁ ଛାତି ଉପରକୁ ଟାଣି ଆଣିଲା । ଦୁଧ ଦେଲା । ପିଠି ଥାପୁଡ଼େଇ ଦେଲା । ନିଶ୍ଚିନ୍ତରେ ଶୋଇପଡ଼ିଲା ପିଲାଟା । ଏଥର ପୁଣି ସେଇ ମାଡ଼ ଖାଇଥିବା ପିଲାଟା ବ୍ୟସ୍ତ ହୋଇଉଠିଲା—

: ଭାରି ଭୋକ ..... ମା' ।

: ଖାଉନୁ ଖା, ନିଆଁ ଖା:, ମତେ ଖା ..... .....

ଅଦିମା ଚିଲ୍ଲେଇଉଠିଲା । ପିଲାଟା ପୁଣି କିଂତୁ କାନ୍ଦିଲା ଏଥର । ଅଦିମା ଗାଲରେ ହାତଦେଇ ବସିପଡ଼ିଲା । ନିଆଁ ଲିଭିଯିବ ବୋଧେ : ଛିଣ୍ଡା ଅଖା ଭିତରୁ ଅଦିମା କେତେଟା ଦରପଚା ଆଳୁ ବାହାରକଲା,ଯାହାକୁ ତା ପିଲାମାନେ କେତେ ଧସ୍ତାଧସ୍ତି ପରେ ଆଣିଥିଲେ । ପିଲାମାନଙ୍କ ମୁହଁରୁ ସେଥର ଟିକେ ହସ ଉକୁଟି ଆସିଲା । ଅଦିମା ଆଳୁ ପୋଡ଼ିଲା । ବଡ଼ ଝିଅ ଆଉ ମଝିଆଁ ପୁଅ ଯିଏ ନୀରବରେ ଥିଲେ ଏପର୍ଯ୍ୟନ୍ତ, ଏକାବେଳେ କାନ୍ଦିଉଠିଲେ—

: ସେ କ-ଖା-ରୁଟା ମା' ?

: ସବୁ ଖାଇଯା ..... ଅଖା ବି ପୋଡ଼ିଦେଉଛି ..... ଅଦିମା ବିରକ୍ତ ହେଲା ।

ସେମାନେ ଚୁପ୍ ରହିଗଲେ । ଆଳୁ ପୋଡ଼ି ସାରିଥିଲା .ଅଦିମା । ସମ-ସ୍ତଙ୍କୁ ବାଣ୍ଟି ସାରିବା ପରେ ତା ପାଇଁ ଖାଲି ଗୋଟାଏ ବେଶି ପଚିଯାଇଥିବା ଖଣ୍ଡିଆ ଆଳୁଟାଏ ଥିଲା । ଝିଅ ଏଥର କହିଲା—

: ତୋ'ର ଏତିକି ମା ?

: ନାଇଁ, ତୁ ଖା', ମୋର ଅଉ ଅଛି । ଅଜାଣତରେ ଅଦିମା ବିକଳ ହସି ପକେଇଲା ।

— ୨ —

ତା'ର ପରିବାରର ସମସ୍ତେ ଶୋଇପଡ଼ିବା ପରେ ଆଦିମା ଦିନେ ଦିନେ ତ ଘରଆଡ଼କୁ ସ୍ୱାଧୀନ ହୋଇ ଯାଏଁ ..... ଗଛକୁ ଆଉଜି ବସେ, 'କେତେ ଯ'ଣ ଭାବିଯାଏ (ସେସବୁକୁ ମିଶେଇଲେ ଇତିହାସ ହୁଅନ୍ତା, ମାତ୍ର କେହି ସେମିତି ଇତିହାସ ଲେଖିବେନି. ବରଂ ମାଟିରେ ତାର ବାସ୍ନା ଭୁଲ୍‌ରେ କେଉଁଠି ରହିଗଲେ ଏସିଡ୍ ପକାଇ ତାକୁ ପୋଡ଼ିଦେବେ । ପୁଞ୍ଜିବାଦ ମରିଯିବ ନଚେତ, ବ୍ଲାକ୍‌ରେ ଅଣନିଶ୍ୱାସୀ ହୋଇଯିବ, ନୀଳନଦୀର ନୀଳରକ୍ତ ଲାଲ ହୋଇ-ଯିବ ..... ।) ଆଦିମାର ମନେପଡ଼େ ତା ପିଲାଦିନ କଥା, ସିଏ କେମିତି ତା ମା ପାଖରେ ଘୁରି ବୁଲୁଥିଲା ..... ବଞ୍ଚିବା ପାଇଁ । ବାପାଙ୍କୁ କେବେ ସେ ଦେଖିନି । ବାପା କଥା ପଚାରିଲେ ମା' କିଛି କହେନା ..... କାନ୍ଦେ ଖାଲି ।

ଆଦିମା ଦେଖେ ସବୁଦିନ ରାତିରେ ମା କେମିତି ତାକୁ ଛାଡ଼ିଦେଇ ଅନ୍ଧାର ଭିତରେ କୁଆଡ଼େ ମିଶିଯାଉଛି । ତାକୁକହେ ... ଶୋଇପଡ଼....ଶୋଇପଡ଼ (ଆଦିମା ଭାବେ ରିକ୍‌ସାବାଲା କ'ଣ ତା'ର ବାପ ??) କେତେ ରାତିରେ ତା ମା' ଆସେ । ରୁଟି ଦି'ଖଣ୍ଡ ତାକୁ ନିଦରୁ ଉଠେଇ ଦିଏ । ପରମ ସନ୍ତୋଷରେ ସେତକ ଖାଇ ଆଦିମା ଶୋଇପଡ଼େ । ମନେପଡ଼େ ତା'ର .... ଦିନେ ମା କୁଆଡ଼େ ଚାଲିଗଲା । ଆଉ ଆସିଲାନି .... । ଆଦିମାକୁ ସବୁ ଅନ୍ଧାର ଦେଖା ଗଲା । ପରିଚିତ ଅନ୍ୟ ଭିକାରୀ-ଭିକାରୁଣୀମାନଙ୍କୁ 'ଆଦିମା' କେତେ କଥା ପଚାରିଲା । କେହି କହିପାରିଲେନି । କେହି ସାନ୍ତ୍ୱନା ଦେଲେନି । ଶେଷରେ ଆଦିମା ସେଇ ବୟସ୍କ ଭିକାରୀ ପାଖକୁ ଗଲା । ଯିଏ ଅପେକ୍ଷାକୃତ କାକୁସ୍ଥ ମାତ୍ର ସରଳ । ବୟସ୍କ ଭିକାରୀ ଆଗରେ ସବୁକଥା ଖୋଲି କହିଲା ଆଦିମା । କେତେ ସାନ୍ତ୍ୱନା ଦେଲା ତାକୁ ବୁଢ଼ା ଭିକାରୀଟି ।

: କାନ୍ଦନା ମା' .... ପାଗେଳୀ, ମା ତୋର ନିଶ୍ଚେ ଆସିବ ।

ତା ମା' କିନ୍ତୁ ଆଉ ଫେରିଲାନି । ମା' ପାଇଁ ଢେର୍ କାନ୍ଦିଲା ଆଦିମା । ଢେର୍ ବି ଗାଳିଦେଲା .... ସିଏ ସମ୍ପୂର୍ଣ୍ଣ ସ୍ୱତନ୍ତ୍ର ହୋଇଗଲା ।

ସେଦିନ ଆଦିମା ମନ୍ଦିର ପାଖ ବଡ଼ କୃଷ୍ଣଚୂଡ଼ା ଗଛମୂଳେ ଶୋଇ ପଡ଼ିଛି । ଚନ୍ଦ୍ର କିରଣ ଅଳ୍ପ ବିଛାଡ଼ି ହୋଇ ପଡ଼ିଛି ତା ଉପରେ । ସେ ଅନୁ-ଭବ କଲା ତାକୁ ଜଣେ କେହି ଆସ୍ତେ ଆସ୍ତେ ନିଦରୁ ଉଠାଉଛି । 'ମା' ଭାବି ଆଦିମା ଚଟ୍‌କରି ଉଠିପଡ଼ିଲା । ହେଲେ ସେ ହାତ ତ 'ଟ' ତା ମା'ର ହାତ

ନଥିଲେ । ତା ପାଖରେ ବସିଥିଲ ମଇଳା ଟ୍ରାଉଜର୍ ପିନ୍ଧା ବାଦାମ ବିକାଳୀ । ଝାପ୍ସା ପଡ଼ିଥାଏ ତା ମୁହଁରେ ତନ୍ଦ୍ରା ଆଲୁଅ । ଆଦିମା ବିବ୍ରତ ହୋଇ-ପଡ଼ିଲା । ଭୟରେ ଗୁଡ଼ିଲା ତା ଆଡ଼କୁ; ଇତସ୍ତତଃ ହୋଇଯାଇଥିବା ଲୁଗା ଟାକୁ ସଜାଡ଼ିଦେଲା । ବାଦାମ ବିକାଳୀ ଏଡ଼ିକିବେଳେ ଟିକେ ହସିଦେଲା ଏବଂ ନରମ ହୋଇ କହିଲା—ଓରନାରେ .... ।

: ନା .... ଆଦିମା ଭୟରେ ଅସ୍ପଷ୍ଟ ଭାବରେ ଚିତ୍କାର କରିଉଠିଲା ।

ବାଦାମବିକାଳୀ କହିଲା—ହେ, ତୁ କ'ଣ ଭାବୁଛୁ ମୁଁ ଡକରଦସ୍ଥ ଘେର ? ଆଦିମା ଚୁପ୍ ରହିଲା । ତାପରେ ପୁଣି ବାଦାମବିକାଳୀ କହିଲା—

: ଏମିତି ତୁ କେତେଦିନ ସତୀ ହୋଇ ରହିବୁ ?

ଆଦିମା ଆଖିରୁ ଭୟ ଓହ୍ଲେଇଗଲା ଅସ୍ତେ ଅସ୍ତେ । ମା' କଥା ମନେପଡ଼ିଲା ତାର । ପିଲାଙ୍କ ପରି ନିର୍ଲିପ୍ତ ଭାବରେ ଆଦିମା କହିଲା, "ତୁ ମତେ ବାଦାମ ଦବୁ ତ ?"

"ହଁ, ଯେତେ ଖାଇବୁ ଖା ।" ବାଦାମବିକାଳୀ ସ୍ପଷ୍ଟ ହୋଇ ସବ କହିଲା ।

ଆଦିମା ମନଇଚ୍ଛା ବାଦାମ ଖାଇଲା । ପୁରୁଣା ଲୁଗା କାନିରେ ପୁଳାଏ ବାନ୍ଧିରଖିଲା ।

ବାଦମବିକାଳୀ କହିଲା, "ତୁ ମୋ କଥା ବୁଝ ଏଥର ।"

ସୁନ୍ଦର ହସଟାଏ ଆଦିମା ହସିଲା, ସମର୍ପଣର ହସ, ଏକାନ୍ତ ଭାବରେ ଆତ୍ମୀୟ ହୋଇପାରିବା ପରେ ସମର୍ପଣର ହସ । ସେମାନେ ସ୍ନାୟୁମନଙ୍କୁ ଠିକ ନିଆଁ ଲଗାଇଦେଲେ । ବାଦାମବିକାଳୀ ଅନାୟାସରେ 'ବାପା' ହେଲା । ଆଦିମା ନିଃସଙ୍କୋଚରେ ବାଦାମବିକାଳୀ ପରି ବାଘଟାକୁ ଯନ୍ତାରେ ପୁରେଇ ଦେଲା । ବାଘ କାମୁଡ଼ା ଭରିଭଲ ତ ? ମା'କୁ କେତେ ଭଲ ଲାଗି ନଥିବ ? (ଆହା । ବାଘ ତାକୁ ସବୁବେଳେ କାମୁଡ଼ନ୍ତା କି ?) ବାଦାମବିକାଳୀ ଗଲା-ବେଳେ ଦି'ଟଙ୍କା ଦେଇଗଲା ତାକୁ । କହିଲା, "କାଲି ଆସିବି ।" ଆଦିମା 'ହଉ' କହିଲା ଓ ଦି'ଟଙ୍କା କାନିରେ ବାନ୍ଧିଲା ।

ସିଏ ଥିଲା ପ୍ରଥମ ଗୁରୁତ୍ୱପୂର୍ଣ୍ଣ 'ବାପା' । ତାପରେ ଅନେକ ଆସିଥିଲେ ଏବଂ ସନ୍ତୁଷ୍ଟ ହୋଇ ଫେରିଯାଇଥିଲେ । ଆଦିମା 'ଆଦିମା'

ହୋଇଗଲାଣି । ପିକା ଟାଣୁଛନ୍ତି ..... ହାଣ୍ଡିଆ ପିଉଛନ୍ତି । ତଡ଼ାରୀ କଥା କହୁଛନ୍ତି..... ଛତରୀ ପରି ଖେଁ ଖେଁ ହସୁଛନ୍ତି । ଆଦିମା ଅଧାଲଙ୍ଗଳା.....ଆବର୍ଜନାମୟ ।

× × × ×

ଯୋଉଦିନ ତା'ର ଝିଅ ହେଲା ସେଦିନ ସେ କେଡ଼ାଣି କାହିଁକି ଖୁବ୍ ଖୁସି ହୋଇଯାଇଥିଲା । ଖୁସି ଯାଇଁ କିନ୍ତୁ ପରମୁହୂର୍ତ୍ତରେ ସେ ଖୋରକ ଯୋଗାଇ ପାରିଲାନି । ଦୁର୍ବଳ ହୋଇପଡ଼ିଥିଲା ସେ । ପେଟରେ ଭୀଷଣ ଭୋକ ..... ଛାତିରେ ଅସହାୟ ଶିଶୁ । ଆଦିମାକୁ ସବୁ ଅନ୍ଧାର ଦିଶିଲା । ଲାଗିଲା ଅନ୍ଧାରରେ ସେ ଦି'ଜଣ ବୋଧେ ପୂରା ପୋତି ହୋଇଯିବେ । ପରିଚିତ ଭିକାରୁଣୀ ୩/୪ ଜଣ ତିନେ ଚାରିଦିନ ଅନେକ କଷ୍ଟରେ ସମ୍ଭାଳି ନେଲେ ତାକୁ । ଆଉ କ'ଣ ବା କରିପାରିଥାନ୍ତେ ସେମାନେ ? ଆଦିମାର ମନେହେଲା, ସିଏ ଜନ୍ମ ହେବା ପରଠାରୁ ଯେମିତି କିଛି ଖାଇନି । ଆଜି ସବୁ ଖାଇଯିବ.....ତା ଝିଅକୁ ବି ଖାଇଯିବ । ଆଦିମା ଚାରେଟିପିଲାର 'ମା' । ଅକସ୍ମାତ୍ ଅତିଦୁଃଖରେ ତାର ଚାରେଟି ପିଲା କିନ୍ତୁ ବଞ୍ଚିପାରିଛନ୍ତି, ସେଇଟା ସବୁଠାରୁ ବଡ଼ ବିଜୟ ।

— ୩ —

ମଙ୍ଗିଆଁ ପୁଅର ମୁଣ୍ଡ ଫାଟିଯାଇଛି । ରକ୍ତ ଝରୁଛି, ବନ୍ଦ ହେଉନି । ସିଏ ଦୁର୍ବଳ ହୋଇପଡ଼ିଲାଣି । ଛିଣ୍ଡା ଅଖା'ର ଗୋଟାଏ ପତଳା ଗଦି ଉପରେ ଶୋଇପଡ଼ିଛି ସେ । ଆଦିମା କନା ଖଣ୍ଡେ ପୋଡ଼ି ପାଉଁଶ ତା କଟାରେ ଦେଲା, ରକ୍ତ ବନ୍ଦ ହେଲା । ଯନ୍ତ୍ରଣାରେ ଛଟି ପାଉଟି ହୋଇ ପିଲାଟା କେତେବେଳପରେ ଶୋଇପଡ଼ିଲା । ଅନ୍ୟ ତିନିଜଣ କାନ୍ଦୁଥିଲେ । ଆଦିମା' ତୋଟି ଶୁଖିଗଲା । ତା ପୁଅ ଦୋକାନ ଆଗରେ ପଡ଼ିଥିବା ପତର-ଗୁଡ଼ିକୁ ଚାହିଁଥିଲା ..... ଉଚ୍ଛିଷ୍ଟକୁ ଅପେକ୍ଷା କରିଥିଲା । ଦୈବାତ୍ ରୁଟି ଖଣ୍ଡେ କେତେସମୟ ପ୍ରତୀକ୍ଷା ପରେ ପତର ମାଙ୍ଗରେ ବାହାରେ ପଡ଼ିଲା । କୁକୁର-ମାନଙ୍କୁ ପରାସ୍ତ କରି ତା ପୁଅ ରୁଟିଟା ନେଇ ଚାଲିଆସିଲା ଓ ଏକ ଐତିହାସିକ ସୁଲତାନଙ୍କ ପରି ବିଜୟର ଆନନ୍ଦରେ ଅମୃହରା ହୋଇ ରୁଟିଟାକୁ କେତେ ସେକେଣ୍ଡ ଚାହିଁ ଶେଷରେ ସଯତ୍ନରେ ପକେଟରେ ରଖିଦେଲା । ହେଲେ କୁକୁରମାନଙ୍କ ଭିତରେ ସେତେବେଳକୁ ଯୁଦ୍ଧ ଆରମ୍ଭ ହୋଇଯାଇଥାଏ ।

ଦୋକାନ ଆଗରେ ଏଯାବୁ ବନ୍ଦ ରଖିବାପାଇଁ ବାସନମଜାଳୀ ପିଲାଟି ଟେକା-ଟାଏ ଫୋପାଡ଼ିଲା .... ସେଇଟା ବାଜିଲା କିନ୍ତୁ ଆଦିମା ପୁଅ ମୁଣ୍ଡରେ । ଆଦିମା କାନ୍ଦ କାନ୍ଦ ହେଲା ।

ଝିଅ କହିଲା, "ମା ! ସେଇ ତେଲେଙ୍ଗା ଟୋକାଟା ମତେ ଅଣ୍ଡି ଡାକୁଥିଲା .... । ମୋ ଭାମା ଚିରିଦେଇଛି ....। ମୁଁ ଦୌଡ଼ି ପଳାଇ ଆସିଲି ।" ଆଦିମା ଝିଅକୁ ଛାତି ଉପରକୁ ଟାଣି ଆଣିଲା, ତା ପିଠି ଥାପୁଡ଼େଇ ଦେଲା-ବେଳେ ସତେଅବା ସିଏ ଯେମିତି କହୁଥିଲା, "ତୋ ମା' କେବଳ ଏତିକି ନିରାପତ୍ତା ଦେଇପାରିବ । ଆଉ ନୁହେଁ .... ..... (?)"

"ଆଜି କିଛି ଖାଇବାନି ମା ?" ସାନପୁଅ ଅସ୍ପଷ୍ଟ ସ୍ୱରରେ କହିଉଠିଲା ।

ଆଦିମା କିଛି କହିବା ଆଗରୁ ବଡ଼ପୁଅ ତାକୁ ଚିମୁଟି ଦେଲା । (ସିଏ ଯେମିତି କହୁଥିଲା—ଏତିକିବେଳେ କ'ଣ ଖେଳ କରେ ??) ଆଖିରୁ ଆଦିମାର ଲୁହ ବହିଯାଉଥିଲା । ମଝିଆଁ ପୁଅ ପିଠିରେ ହାତ ମାରିଲା । ଭୀଷଣ ତାଡ଼ି । ନିଶବ୍ଦରେ ଆଦିମା ଆକାଶ ଆଡ଼କୁ ଗ୍ଆହିଁଲା । ଝିଅ ତା ଭଳିର ପକେଟରେ ହାତ ମାରିଲା । ପଟଟ ଭଲ ରୁଟି । ସେଇଟା ଧରି ତୃପ୍ତିର ଢୋକଟାଏ ପୁରହସ ହସିବାକୁ ଆରମ୍ଭ କରୁଥିଲା ସିଏ । ଏତିକିବେଳେ ତା ଓଠକୁ ଆକସ୍ମିକ ଭାବରେ ଦୁଃଖିତ କରିଦେଇ ଓ ଆଖି ଦିଟାକୁ ଲୁହ ଛଳଛଳ କରିଦେଇ ସାନ ପୁଅ ରୁଟିଟାକୁ ଛଡ଼େଇନେଇ ଦୌଡ଼ିଲା ।

— ୪ —

ଆଦିମା ବେମାର ପଡ଼ିଛି । ଷ୍ଟେସନ ବାରଣ୍ଡାରେ ଶୋଇଥିଲା । ଜ୍ୱରପର ତାକୁ ପଡ଼ିରିଦେଇଥାନ୍ତା । ପିଲାଏ ତାକୁ ଝଙ୍କା ବରଗଛ ତଳକୁ ଟେକି ନେଇଛନ୍ତି । ଛିଣ୍ଡା ଅଖାର ପୁରୁଣା ସେଇ ଗଦି ଉପରେ ଆଦିମା ଶୋଇପଡ଼ି ଭାବୁଛି ତା ପିଲାଙ୍କ କଥା । ଦି'ଦିନ ହେଲାଣି ପିଲାଗୁଡ଼ା ତାକୁ ଛିଣ୍ଡା ରୁଟି ଆଣି ବେଳେବେଳେ ଭାତ ଦେଉଛନ୍ତି । ସେସବୁ କିନ୍ତୁ ତା'ର ଖାଇବାକୁ ଇଚ୍ଛା ନାହିଁ । ଦୋକାନରେ ପତଳା ଝରି ଗୁଡ଼ା ହୋଇଥିବା ଧଳା ରୁଟି ଖାଇବାକୁ ତାର ଭାରି ଆଗ୍ରହ । ମନେପଡ଼ୁଛି ପିଲାଦିନେ ତା ମା' ତାକୁ ଥରେ ଦେଇଥିଲା ସେଇ ରୁଟି ବେମାର ପଡ଼ିଲାବେଳେ । ଯାଚିକୁ ଭାରି ନରମ ଲାଗେ, ମିଠା ମିଠା !

ରାତି ଏଗାରଟା ହେବ ବୋଧେ । ପୁଅ ତିନିଜଣ ସକାଳୁ ଯାଇଥିଲେ ସେଇ ଅମୂଲ୍ୟ ବସ୍ତୁ ସଂଗ୍ରହ କରିବାକୁ । ଏପର୍ଯ୍ୟନ୍ତ ଫେରି ନାହାନ୍ତି । ସାନ ପୁଅଟା ଏବେ କିଛି ନ ଆଣି ଫେରିଆସିଲା, ଶୋଇପଡ଼ିଛି ହାଲିଆ ହୋଇ । ଆଦିମାକୁ ଦେଖିଲେ ମନେ ହେଉଛି ସିଏ ସଦ୍ୟ ସୃଷ୍ଟି ହୋଇଥିବା ପ୍ରଖ୍ୟାତ କଣେ ମଣିଷର ସ୍ଥାପତ୍ୟ । ଖୁବ୍ ନିକଟରେ ମ୍ୟୁଜିୟମରେ କାଚକବାଟ ଭିତରେ ରହିବ ..... କ୍ୟାମେରା ଫ୍ଲାସ୍‌ରେ ଅଣନିଶ୍ୱାସୀ ହୋଇଯିବ । ଯନ୍ତ୍ରଣାକୁ ଡାବୁଡ଼ି ଧରି ଆଦିମା ଶୋଇପଡ଼ିଲାଣି । ଝିଅ ଭାବିଲା ସେଇ ତେଲେଙ୍ଗା ବସ୍ତୁକୁ ରଖେ କେମିତି ହୁଅନ୍ତା । ଆସ୍ତେ ଆସ୍ତେ ସିଏ ଉଠିଲା । ଅନ୍ଧାର ଭିତରେ ଗୋଡ଼ ଦି'ଟାକୁ ବୋହି ନେଇ ତେଲେଙ୍ଗା ବସ୍ତିରେ ପହଞ୍ଚିଲା ସେ କମ୍ ସମୟ ଭିତରେ । ଜଣେ ମଦ ଖାଇ ଟଳୁଥିଲା । ଝିଅ ତା ଢଙ୍ଗରେ ଦୁଷ୍ଟାମି ଆରମ୍ଭ କରିଦେଲା । ତା ଅଣ୍ଟାରେ ଟିକେ ହାତ ମାରିଦେଲା : ' ହେଃ .......... ।'' ମଦୁଆ ମଣିଷଟା ନିଷ୍ପଳ ହୋଇଗଲା । ସିଏ ଆଦିମା ଝିଅକୁ ଏଠି ଏଇ ପ୍ରଥମ ଥର ଦେଖୁଛି । ଆଶ୍ଚର୍ଯ୍ୟ ହୋଇ ପଚାରିଲା, "ତୁ ?"

ଝିଅ କହିଲା, "ହଁ-ମୁଁ । ମା ଦିହ ଭାରି ଖରାପ ।" ସେଇ ଲୋକଟା ତା କାନ୍ଧରେ ହାତ ପକେଇ ଦେଇ କହିଲା, "କେତେ ନବୁ ?" ପୁଣି ସେମିତି ଦୁଷ୍ଟଙ୍କ ପରି ହସି ଝିଅ କହିଲା, "ପୁରା ପାଞ୍ଚ ।" "ଧେତ୍ ..... । ଧେତ୍ .... ।" ମଦୁଆ ପୁଣି ଟଳି ଟଳି ଆଗକୁ ଗ୍ଲଲିଲା । ଝିଅ କହିଲା ଅପଣ୍ଡ କରି, 'ମୁଁ ପୁନି ନୁହେଁ ମ ?" ମଦୁଆଟା ଫେରି ଗ୍ଲହିଁଲା । "ତିନିଟଙ୍କା ଅଛି ମୋ ପାଖରେ, ଆଉ ନାହିଁ ।" ଝିଅ କହିଲା, "ହଉ ଦେ ।"

ରାତି ପାହି ଆସୁଥିଲା । ଝିଅ ଗୋଟାଏ ପାଉଁରୁଟି ଧରି ମା ପାଖକୁ ଫେରି ଆସିଲା । ଆଦିମା ସେମିତି ଶୋଇଥାଏ । ତା ପାଖରେ ସାନପୁଅ ଶୋଇପଡ଼ିଛି ନିଶ୍ଚିନ୍ତରେ । ଗୋଡ଼ ପାଖରେ ବୁଲା କୁକୁରଟାଏ ବି ଶୋଇ ପଡ଼ିଛି । (ଆଦିମ କୁକୁରଟାଏ ।) ଝିଅ ପାଉଁରୁଟିକୁ ଜଗି ବସିରହିଲା ।



'ଆମେ ବଞ୍ଚିଛୁ' ସାହିତ୍ୟ ସଂସଦ
ରେଭେନ୍‌ସା ମହା ବିଦ୍ୟାଳୟ, କଟକ-୩

• ଚନ୍ଦ୍ରଶେଖର ରଥ

# ନିଦ୍ରାଭଙ୍ଗ

(ଆକାଶବାଣୀ ସୌଜନ୍ୟରୁ)

ଶୋଇବା କୌଣସି ଅପରାଧ ନୁହେଁ । ଆଦୌ ନ ଶୋଇ ଜାଗର ଜାଗିବାର କୃଚ୍ଛ୍ର ସାଧନା ମଧ୍ୟ ସେପରି କିଛି ଅସାଧାରଣ ଗୌରବ ନୁହେଁ; ବରଂ ଜାଗ୍ରତ ରହିବାର ମୂଲ୍ୟ ଯେ ବୁଝିଛି, କିଛି ସମୟ ଶୋଇଯିବା ତା' ପାଇଁ ଏକ ସହଜ ଏବଂ ସ୍ୱାଭାବିକ ଅଧିକାର, ଏକ ପ୍ରୟୋଜନ ମଧ୍ୟ । ନ ଶୋଇଲେ ଜାଗିବ କେମିତି ? ନ ଜାଗିଲେ ଶୋଇବ ବା କେମିତି ? ଦିନ ଏବଂ ରାତି ପରି ଶ୍ୱାସ ପ୍ରଶ୍ୱାସ ପରି, ବଞ୍ଚିବା ଏବଂ ମରିବା ପରି ଜାଗିବା ଏବଂ ଶୋଇବା ଏକ ଅତି ପ୍ରାଚୀନ ସାଧାରଣ ଆଦିମ ଛନ୍ଦ । ଏ ଛନ୍ଦକୁ ରକ୍ଷା-କରିବା ଧର୍ମ, ଏହାକୁ ଭଙ୍ଗ କରିବା ଅପରାଧ । .....

"କିହୋ, ମାଷ୍ଟରବାବୁ ! ଏତେ ଉନ୍ମୁଖ ଛାତ୍ର ତୁମ ମୁହଁକୁ ଚାହିଁ ବସିଥିଲାବେଳେ ତୁମେ ଏ ଦିନ ଦିପହରଟାରେ କାହିଁକି ଢୁଳଉଛ ? ସଞ୍ଜରୁ ରାତି ବାରଟା ଯାଏ ଏବଂ ସାହାନ୍ତିଆରୁ ଦିନ ଦଶଟା ଯାଏ ଟିଉସନ ପାଇଁ ଯଦି ପରିଶ୍ରମ କରୁଥାଅ, ତେବେ ତୁମର ମୂଳ କାମଟି କରିବ କିଏ ?" ..... "ତୁମେ ବାବୁ ଜଣେ ପଦସ୍ଥ କର୍ମଚାରୀ ! ଗତ ରାତିରେ ତୁମ ନାଚଗୀତ ଏବଂ ଭୋଜି ସରୁସରୁ କୁକୁଡ଼ା ଡାକିବାବେଳ ହୋଇଗଲା । ଦପ୍ତରରେ ବସି ଏମିତି ରଙ୍ଗରଙ୍ଗ ଆଖି କରି ହାଇ ମାରୁଚ; କାଗଜରେ କଲମ ଥୋଇ ପାରୁନାହଁ । ବାହାରେ ଘର ଉତୁଡ଼ି ଯାଉଥିବା ସଂସାରକୁ ନେଇ ଶହ ଶହ ପ୍ରାର୍ଥୀ ଅପେକ୍ଷା କରିଛନ୍ତି ।"

ରାତିରେ ଚାହିଁ ଦିନରେ ଶୋଉଥିବା ଏ ଅସଂଯମୀମାନଙ୍କ ଅପରାଧ ପାଇଁ କ୍ଷମା ନାହିଁ । କିନ୍ତୁ ତାଙ୍କୁ ଶାସ୍ତିବିଧାନ କରିବ କିଏ ? ଯେ କରନ୍ତା, ସେ ନିଜେ ଚାହିଁଥିଲେ ହୁଅନ୍ତା । ତାଙ୍କୁ ଆଉପ୍ରକାରେ ନିଦ ଗ୍ରାସିରହିଛି । ତାହା ହେଲା ନିଶ୍ଚିନ୍ତତାର ନିଦ । ଚାହିଁ ରହି ସୁଦ୍ଧା ଯଦି କେହି ଚାହିଁବା ଭଳି କ୍ରିୟା ପ୍ରତିକ୍ରିୟା ପ୍ରକାଶ ନ କରେ, ସେ ସୁପ୍ତ । ଶରୀର ଥକି ଯାଇଛି, ଆଖି ବାଟି ହୋଇ ପଡୁଛି—ଏପରି ଅବସ୍ଥାରେ ଦେହ ଏବଂ ମନ ଉପରେ ନିଦର ଗୋଟିଏ ଶୀତଳ ଚାଦର ମଡ଼େଇ ହୋଇଯିବା ଅତି ସ୍ୱାଭାବିକ୍ ଏବଂ ସୁନ୍ଦର ମଧ୍ୟ ।

କିନ୍ତୁ ମଟମଟ ଚାହିଁଥିଲେ ସୁଦ୍ଧା ଯାହାର ଦୃଷ୍ଟି ନାହିଁ; ଯାହାର ବୁଦ୍ଧି ଶୋଇ ଯାଇଛି ସେ ବିଚାର କରିପାରୁନାହିଁ, ମନ ଶୋଇଯାଇଛି, ସେ ଚିନ୍ତା କରିପାରୁ ନାହିଁ; ବିବେକ ଶୋଇଯାଇଛି ଏବଂ ସେ ହିତାହିତ କ'ଣ ବୁଝିପାରୁନାହିଁ ସେ ଘୋରତର ଜଡ ନିଦ୍ରାରେ ଆଚ୍ଛନ୍ନ । ତାକୁ ଉଠାଇବା ଅତି କଠିନ ବ୍ୟାପାର, ଏବଂ ବୋଧହୁଏ ଏକ ଦୁରୂହ ଆଧ୍ୟାତ୍ମିକ ବ୍ୟାପାର ।

ଅଳସୁଆ ବଳଦ ପରି, ଠାପୁଆ ପାଠ ଘ୍ୱେର ପରି, କାମ କରିବା ଭୟରେ, ଦାୟିତ୍ୱ ଭାରରୁ ସହଜ ନିଷ୍କୃତି ପାଇଁ ଏ ଦେଶର ଅଧିକାଂଶ ଲୋକେ ଆଖି ବୁଜି ପଡ଼ିଛନ୍ତି । ସତକୁସତ ଛ'ମାସ ଶୋଇଥିବା କୁମ୍ଭକର୍ଣ୍ଣକୁ ସିନା ଉଠେଇ ହୁଏ, କିନ୍ତୁ ଚାହିଁ ଶୋଇଥିବା ଏ ଠକ କର୍ମଚୋରିମାନଙ୍କୁ ଉଠେଇବା ସହଜ ନୁହେଁ । ଶଠତା, ମିଥ୍ୟାଚାର, ଆଳସ୍ୟର ନିଦ୍ରା ଘାରି ରହିଛି ସେମାନଙ୍କୁ ଚାରିଆଡ଼୍ । ସମଗ୍ର ଦେଶ ଶୋଇଯାଇଛି । ତା'ର ସକ୍ରିୟ ଚେତନା ମୋହଗ୍ରସ୍ତ ହୋଇପଡ଼ିଛି । ଜାଗିଥିବା ବ୍ୟକ୍ତିଟି ଯେପରି ଜାଗିଛି ବୋଲି ଜାଣିପାରେ, ଅଥଚ ଶୋଇଥିଲେ ଶୋଇଛି ବୋଲି ଜାଣିପାରେନାହିଁ, ସେହିପରି ଏ ଜାତି ଜାଣିପାରୁନାହିଁ ଶୋଇଛି ବୋଲି । ସେ ଜାଗ୍ରତ ଥିବାର କୌଣସି ଲକ୍ଷଣ କେଉଁଠି ହେଲେ ଦିଶୁନାହିଁ । ଟ୍ରେନ୍‌ଟିଏ ଯାଉଯାଉ ଶୋଇଯାଉଛି; ଠିକ୍ ସମୟ ରଖିପାରୁନାହିଁ । ଫାଇଲ୍‌ଟିଏ ଶୋଇଯାଉଛି, ଦଶବର୍ଷଯାଏ ଉଠୁନାହିଁ । ରାସ୍ତା, ପୋଲ, କୋଠା ଅଧାଡ଼ିଆରି ଅବସ୍ଥାରେ ଶୋଇଯାଉଛନ୍ତି; କେବେ ଉଠିବେ କହି ହେଉନାହିଁ । ଯୋଜନା ଶୋଇଯାଉଛି, ତା' ଉପରେ ଅନ୍ୟ ଯୋଜନାଟିଏ ମଡ଼େଇ ହୋଇପଡ଼ୁଛି । ନିଦରେ ବାଉଳି ହେଲାପରି ଗୁଡ଼ିଏ ମୁଣ୍ଡିଆଳ ଲୋକ ନିଶି କ'ଣ ସବୁ ପାଟିତୁଣ୍ଡ କରୁଛନ୍ତି । ସେଇଠି ତାଙ୍କର କହିବା ଅପେକ୍ଷା ଖାଇବା ବେଶି, ଖାଇବା ଅପେକ୍ଷା ପିଇବା ବେଶି । ସେମାନେ ସେଇଠୁ ଉଠି ସବୁ ଭୁଲିଯାଆନ୍ତି । ଯେଉଁ ବନ୍ୟାରେ ବନ୍ଧ ପକାଇବେ ବୋଲି ସେମାନେ ବୈଠକ ବସାଇଥିଲେ, ସେ ବନ୍ୟା ପୂର୍ବପରି ମୁହାଣ ମେଲା କରି ମାଡ଼ି ଚାଲିଛି; ପୂର୍ବପରି ମରୁଡ଼ିରେ ମଣିଷ ହାହାକାର କରି ମରୁଛନ୍ତି ।

ଦେଶର ଏମିତି ନିଦ ଟଳମଳ ଅବସ୍ଥାରେ ଯଦି କିଛି ଅଙ୍ଗପ୍ରତ୍ୟଙ୍ଗ ଚଳପ୍ରଚଳ ହେଉଛି, ତାହା କେବଳ ସୂଚନା ଦେଉଛି ଯେ ମହାନିଦ୍ରା ଆହୁରି ଆସିନାହିଁ—ଜାତିଟି ବଞ୍ଚିଛି । କିନ୍ତୁ ସେ ଅନିଚ୍ଛିତ ଚଳପ୍ରଚଳ କୌଣସି କର୍ମ ନୁହେଁ । ତା'ର କୌଣସି ଅର୍ଥ ନାହିଁ । ଶୋଇଗଲେ କିଛି ଦିଶେନାହିଁ, କିଛି ଶୁଭେ ନାହିଁ । ହାତ ଥାଇ ନ ଥିଲା ପରି, ଗୋଡ଼ ଥାଇ ନ ଥିଲା ପରି ଜଡ଼ବତ୍

ଶରୀରଟି ପଡ଼ିରହେ । ସେପରି ଅବସ୍ଥାରେ ସେ ଶେକ ଶୋଷବୁ ବୁଝିପାରେ ନାହିଁ । ଫୁଙ୍ଗୁଳା ଦେହରେ ଲୁଗା ନାହିଁ ବୋଲି ଅନୁଭବ କରିପାରେ ନାହିଁ । ସେତେବେଳେ ତାର ମର୍ଯ୍ୟାଦାବୋଧ ନଥାଏ, ଲଜ୍ଜା ଅପମାନ ନଥାଏ; କାରଣ ଲଜ୍ଜିତ ହେବା କିମ୍ବା ଅପମାନିତ ବୋଧ କରିବା ଜାଗ୍ରତ ଚେତନାର ଲକ୍ଷଣ ତ' । ଶୋଇଗଲେ ଚେତନା ହରଣ ହୋଇଯାଏ । ତା' ସାଙ୍ଗେ ସାଙ୍ଗେ ନିର୍ଦ୍ଦିଷ୍ଟ ଚରିତ୍ର ଲକ୍ଷଣ ମଧ୍ୟ ଲୋପ ପାଇଯାଏ । ନିଦ୍ରା ଏକପ୍ରକାର ମୃତ୍ୟୁ ।

ନିଦରୁ ଉଠିପଡ଼ିବା ମଧ୍ୟ ସେହିପରି ଏକ ନୂତନ ଜନ୍ମ । ଯେ ଜାଗ୍ରତ, ସେ ହିଁ ଅନ୍ୟଜଣକୁ ଜାଗ୍ରତ କରିପାରେ । କାହାକୁ କେଉଁଠି ଛୁଇଁଲେ ସେ ଜାଗି ଉଠିବ, ତାର ସେପରି କୌଣସି ବିଧିବଦ୍ଧ ପଦ୍ଧତି ନାହିଁ । ସେ ଏକପ୍ରକାର ଯୋଗାଯୋଗ କଥା । ଶୋଇଥିଲେ ସୁଦ୍ଧା ଯେ ଗୋପନରେ ଉଠିବି ଉଠିବି ବୋଲି ଉନ୍ମୁଖ ହୋଇଥାଏ, ଅଥଚ ଉଠିପାରୁ ନଥାଏ, ତା' ଆଖି ପତାରେ ଅଳ୍ପ ଫୁଙ୍କିଦେଲେ ସେ ଜାଗିଉଠେ । ଦକ୍ଷିଣରୁ ପବନ ଆସି କୌଣସି ଅନୂଢ଼ା ଲତାଟିକୁ ସାମାନ୍ୟ ଦୋହଲାଇ ଦେଇ ପରମ ଯତ୍ନରେ ଏବଂ ଶ୍ରଦ୍ଧାରେ ମନ୍ତ୍ର ପଢ଼ିଲା ପରି କହେ, "ବସନ୍ତ ଆସିଲାଣି ସଖ । ତୁ କ'ଣ ଏଯାଏଁ ଶୋଇଛୁ ମ', ଉଠ୍ ।" ଲତା ଶିହରି ଉଠେ । ତା' ଭିତରର ସମସ୍ତ ରଙ୍ଗ ଓ ସୌରଭ ଜାଗ୍ରତ ହୋଇଉଠନ୍ତି । ସେ ମଣ୍ଡି ହୋଇଯାଏ ପତ୍ର ପୁଷ୍ପର ନୂତନ ସମ୍ଭାବନାରେ । ଏତକ ହୋଇ ନଥିଲେ ଲତା ଜୀବନର ପୂର୍ଣ୍ଣାଙ୍ଗ ବିକାଶ ହୋଇ ନଥାନ୍ତା । ଶୋଇ ରହିଯାଇଥାନ୍ତା ସୁଷମାର ଗୋଟିଏ ପର୍ଯ୍ୟାୟ । ..... ସେହିପରି ସମୁଦ୍ରକୁ ନିଦ୍ରାରୁ ଉଠାଇଦିଏ ପୂର୍ଣ୍ଣିମାର ଚନ୍ଦ୍ର । ସମୁଦ୍ରରେ ଜୁଆରର ଉଲ୍ଲାସ ଦେଖାଦିଏ । ..... ବର୍ଷା ଉଠାଇଦିଏ ଊଷର ଭୂମିକୁ; ଦିଗ୍‌ବଳୟ ଭରି-ଯାଏ ନୀଳାଭ ସବୁଜିମାରେ ।

ଉଠାଇବା ଅର୍ଥ ଶୋଇ ରହିଥିବା ସଂପୃକ୍ତ ଚେତନାକୁ ଉଦ୍‌ବୋଧିତ କରିବା ।—"ଉଠ, ଜାଗ୍ରତ ହୁଅ, ଶ୍ରେଷ୍ଠ କଲ୍ୟାଣ ଲାଭକର ।" ମୋଟ ଉପରେ ଉଠାଇବା ଅର୍ଥ ଆତ୍ମାକୁ ଉଠାଇବା ଅର୍ଥାତ୍ ଚିର ଜାଗ୍ରତ ଆତ୍ମା ଉପରୁ ଜଡ଼ ନିଦ୍ରାର ପ୍ରଲେପକୁ ଯତ୍ନରେ ଏବଂ ଶ୍ରଦ୍ଧାରେ ପୋଛି ପକାଇବା ।

ଜଡ଼କୁ ଉଠାଇବା କିନ୍ତୁ ମଣିଷକୁ ଉଠାଇବାଠାରୁ ଭିନ୍ନ । ଯେତେ-ବେଳେ, ଅଣ୍ଡା ଭିତରେ ଅନନ୍ତ କାଳରୁ ଶୋଇରହିଥିବା ସିଂହ ଶକ୍ତିକୁ ଉଠାଇ ଦିଆଗଲା । ସେ ଜଳି ଉଠିଲା ସହସ୍ର ସୂର୍ଯ୍ୟ ପରି । ଶିବ ଜଟାରୁ ବାହାରି କାଳ ଭୈରବ ଗର୍ଜିଲା ପରି ସେ କହିଲା, "ମୁଁ ଅମିତ ପରାକ୍ରମଶାଳୀ । ମୁଁ ଜଗତକୁ ଧ୍ୱଂସ କରିପାରେ । ମୋତେ କାହିଁକି ଆବାହନ କଲ କହ; ନଚେତ

ମୁଁ ସବୁ ଜାଳିଦେବି ।" କରଯୋଡ଼ ହୋଇ ଯେତେବେଳେ ସ୍ତୁତି କରିବାକୁ ହୁଏ, "କ୍ରୋଧ ସମ୍ବରଣ କରନ୍ତୁ, ହେ ମହାକାଳ । ଆପଣ ଗୃହୀଲେ ଏ ସମସ୍ତଙ୍କୁ ଦିବ୍ୟତେଜରେ ପାଳନ ମଧ୍ୟ କରିପାରନ୍ତି । ଆପଣ ପାଳନ କରନ୍ତୁ ।" ସ୍ତମ୍ଭ ଭିତରେ ଲୁଚିଥିବା ନୃସିଂହ କିନ୍ତୁ ଥରେ ବାହାରି ଆସିଲେ ଅବଦ୍ଧ୍ୟ ହିରଣ୍ୟ କଶିପୁକୁ ବିଦାରଣ କରିବେ । ମହାଶକ୍ତିଙ୍କର ସନ୍ତୋଷ ପାଇଁ ଯଜ୍ଞପଶୁ ବଧ ହେବ ହିଁ ହେବ । ଯୋଜନା ସ୍ଥିରକରି ମଣିଷ ଭିତରର ସମସ୍ତ ଦୈବୀଶକ୍ତିକୁ ଜାଗ୍ରତ କରିଦେଲେ, ସେ ଅପଶକ୍ତିମାନଙ୍କୁ ସଂହାର କରିଯିବ; ସମତୁଲ ହୋଇଯିବ ମୂଲ୍ୟଭୂମି । ଶୋଇବାବେଳେ ପଶା ଖେଳୁଥିବା ଏବଂ ଗୃହୀବାବେଳେ ମିଥ୍ୟାଗ୍ରହ କରୁଥିବା ଏ ବ୍ୟଭିଗ୍ରହୀମାନଙ୍କର ବିନାଶ ହୋଇଯିବ ।

ତନ୍ଦ୍ରା ନିଦ୍ରାରେ ଆଚ୍ଛନ୍ନ ହୋଇ ମଣିଷ ଯାହା ମୂଢ଼ ଭଳି ଆଚରଣ କରୁଥାଏ ସେ ତାହା ବୁଝିପାରେନାହିଁ । ଶୋଇଥିବା ବ୍ୟକ୍ତିର ଆଚରଣ ଅତି କରୁଣ । ତାହା କଦାପି ଦଣ୍ଡନୀୟ ନୁହେଁ ବରଂ ଦୟନୀୟ । ଏ ଦେଶର ଚେତନା ସୁପ୍ତ । ଏଣୁ ଯାହା କିଛି ଅପକର୍ମ ଦିଶୁଛି ତାହା ସେ ମହତ୍ ଆତ୍ମାର ପ୍ରକାଶ ନୁହେଁ । ଶୋଇବା ଅବସ୍ଥାରେ ଯେପରି ସ୍ୱପ୍ନ ଭୂମିରୁ ଆସି ଗୁଡ଼ାଏ କୁତ୍ସିତ ଅପଶକ୍ତି ମନ, ପ୍ରାଣ ଏବଂ ଶରୀର ଭୂମିକୁ ଅଧିକାର କରିଥାନ୍ତି ସେହିପରି ଦେଶର ନିଦ୍ରାବସ୍ଥାରେ ଅନେକ ଅପଶକ୍ତି ମଣିଷକୁ ଆଶ୍ରୟ ଏବଂ ଆଳ କରି ଘୋର ଦୁର୍ବିପାକ ସୃଷ୍ଟି କରୁଛନ୍ତି । ଶୋଇଥିବା ବ୍ୟକ୍ତି ନିଜେ ନିଜକୁ ଆଘାତ କରି ପୁଣ୍ଡା ଜାଣି ନ ପାରିଲା ପରି, ଆମେ ଜାଣିପାରୁନାହୁଁ ଦେଶର ଅଧିକାଂଶ ବିପତ୍ତି ପାଇଁ ଆମେ କେତେ ଦାୟୀ, ଆମର ଆଚ୍ଛନ୍ନ ଚେତନା କେତେ ଦାୟୀ, ଆମର ନିଦ୍ରା କେତେ ଦାୟୀ ।

ଏ ଦେଶର ଆତ୍ମ ଚିରଜାଗ୍ରତ । ସେ ଉଠିବି ଉଠିବି ହୋଇ ଉଠି ପାରୁନାହିଁ । ଯଥା ସମୟରେ ଯେପରି କେହି ଆତ୍ମଦ୍ରଷ୍ଟା ମହାପୁରୁଷ ଆସି ତାର ହୃତ କମଳକୁ ସ୍ପର୍ଶ କରିଦେଲେ ସେ ଉଠିବସିବ । ଖସିଯିବ ତାର ନିଦ୍ରାର ନିର୍ମୋକ, ତାର ଆଳସ୍ୟ, ତା'ର ଆତ୍ମପ୍ରତାରଣା, ତା'ର ମୂଢ଼ତା । ସେ ବୁଝିବ ନିଜକୁ, ନିଜର ଶକ୍ତିକୁ, ସମ୍ଭାବନାକୁ ଏବଂ ପୁଣି ମର୍ଯ୍ୟାଦାବନ୍ତ ହେବ ଏ ଭୂମି । ତା'ର ନିଦ୍ରାଭଙ୍ଗ ହେବ ।

—୦—

ବ୍ଲକ୍—୨/୮, ୟୁନିଟ୍—୯ ଫ୍ଲାଟ୍
ଭୁବନେଶ୍ୱର—୭୫୧୦୦୭

■ ମୂଳରଚନା—ଡକ୍‌ଟର ବିଷ୍ଣୁଦେବ ପାଣ୍ଡା

■ ଅନୁବାଦ—ଡକ୍‌ଟର ଭବଗ୍ରାହୀ ମିଶ୍ର

# ବଙ୍ଗ ସାହିତ୍ୟର କବି ଅଚିନ୍ତ୍ୟ କୁମାର

ଥରେ ଉଇଲ ଡୁରାଣ୍ଟ କହିଥିଲେ ଯେ କବିତାର ଉତ୍କର୍ଷ ବିଚାର କରିବା ଅତ୍ୟନ୍ତ କଷ୍ଟକର ବ୍ୟାପାର । କାରଣ ବିଚାରକମାନଙ୍କ ମଧ୍ୟରେ ରୁଚିଗତ ପାର୍ଥକ୍ୟ ଦେଖାଦେଇଥାଏ । ଜଣକର ବିଚାରରେ ଯେଉଁ କବି ବିଶିଷ୍ଟ କବି ଭାବରେ ସ୍ୱୀକୃତ, ଅନ୍ୟ ଜଣେ ହୁଏତ ସେହି କବିଙ୍କୁ ସେଭଳି ବୈଶିଷ୍ଟ୍ୟର ଅଧିକାରୀ ବୋଲି ସ୍ୱୀକାର କରି ନ ପାରେ । କିନ୍ତୁ ଗଭୀର ମନନଶୀଳତା, ସାର୍ଥକ ରୂପକଳ୍ପର ପ୍ରୟୋଗ ଓ ସଙ୍ଗୀତଧର୍ମିତା ପ୍ରଭୃତି ଯେ କବିତାର ଉତ୍କର୍ଷ ପ୍ରମାଣିତ କରେ, ସେଥିରେ ସାଧାରଣତଃ କୌଣସି ବିତର୍କର ପ୍ରଶ୍ନ ନାହିଁ ।

କଲ୍ଲୋଳ ଗୋଷ୍ଠୀର ଅନ୍ୟତମ ସଦସ୍ୟ ଅଚିନ୍ତ୍ୟ କୁମାର ସେନଗୁପ୍ତଙ୍କର କବିତାଗୁଡ଼ିକ ବିଚାର କରିବାକୁ ଗଲେ ଉପରୋକ୍ତ ଗୁଣାବଳୀର ସନ୍ଧାନ ଅବଶ୍ୟ ମିଳିଥାଏ—ମିଳେ ଆହୁରି ଅନେକ କିଛି କାବ୍ୟଗୁଣର ସନ୍ଧାନ । ତେଣୁ ମନେ-ହୁଏ କଥାଶିଳ୍ପୀ ହିସାବରେ ଅଚିନ୍ତ୍ୟ କୁମାର ଯେତେ ବଡ଼, କବି ହିସାବରେ ତା'ର ପରିମାପ ତା'ଠାରୁ କମ୍ ନୁହେଁ । 'ନୀହାରିକା ଦେବୀ' ଛଦ୍ମନାମରେ ୧୯୨୩ ମସିହାରେ କବି ଅଚିନ୍ତ୍ୟକୁମାରଙ୍କର ପ୍ରଥମ କବିତା 'ପ୍ରବାସୀ' ପତ୍ରିକାରେ ପ୍ରକାଶ ପାଏ । ତା'ପରେ ଅଚିନ୍ତ୍ୟ କୁମାର ଅନେକ କବିତା ଲେଖିଥିଲେ ମଧ୍ୟ, ତାଙ୍କର ଉପନ୍ୟାସ; କ୍ଷୁଦ୍ରଗଳ୍ପ ଓ ଜୀବନୀ ତୁଳନାରେ ଏହା କମ୍ । ରଚନାର ପରିମାଣ ଯେ କବି-କୃତିର ଉତ୍କର୍ଷ ଅପକର୍ଷ ପ୍ରମାଣ କରେନାହିଁ, ତାହା ଏବେ ଆଉ ବିବଦମାନ ବିଷୟ ନୁହେଁ । ଅଚିନ୍ତ୍ୟ କୁମାର ତେଣୁ କବି ଓ କଥାଶିଳ୍ପୀ ଭାବରେ ସୁପରିଚିତ ଓ ସୁପ୍ରତିଷ୍ଠିତ ।

"ପିପାସା ଜର୍ଜର ମୋର ବୁକେର ପଞ୍ଜର—ଏକ ପାର୍ଶ୍ୱେ ରାକ୍ଷସେର ଅନ୍ୟ ପାର୍ଶ୍ୱେ ଦେବତାର ଘର"—ଏଇ ହେଉଛି କବିଙ୍କର ଅକପଟ ଆତ୍ମ ପରିଚୟ । ଗୋଟିଏ ଦୃଷ୍ଟିରୁ ଦେଖିଲେ ଆଜିକାଲି ପ୍ରତ୍ୟେକ ମନୁଷ୍ୟର ପ୍ରକୃତ

ପରିଚୟ । ଅଚିନ୍ତ୍ୟକୁମାରଙ୍କର କବିତାର ବକ୍ତବ୍ୟ ଏଭଳି ଦ୍ୱୈର୍ଥହୀନ, ତୀକ୍ଷ୍ଣ ଓ ଅବ୍ୟର୍ଥ ।

ଯେ ରବୀନ୍ଦ୍ରନାଥଙ୍କର ସମକାଳୀନ ଓ ବ୍ୟାପକ ଅର୍ଥରେ ରବୀନ୍ଦ୍ର ପ୍ରଭାବିତ ହେଲେ ମଧ୍ୟ ରବୀନ୍ଦ୍ର ଅନୁସାରୀ ବୋଲି ଆଦୌ କୁହାଯାଇ ପାରିବ ନାହିଁ । କେତେକ କ୍ଷେତ୍ରରେ ଏମାନେ ଏମାନଙ୍କର ବିଶ୍ୱାସରେ ଐକ୍ୟମୁଖୀ । କିନ୍ତୁ ସେହି ଲକ୍ଷ୍ୟ ସ୍ଥଳରେ ଉପନୀତ ହେବାର ପଥ ମଧ୍ୟରେ ଥିବା ପ୍ରଭେଦ ଉଭୟଙ୍କ ମଧ୍ୟରେ ସୁସ୍ପଷ୍ଟ । ପ୍ରକୃତ ପକ୍ଷରେ ଜୀବନାନନ୍ଦ, ସୁଧୀନ୍ଦ୍ରନାଥ ଓ ବୁଦ୍ଧଦେବ ପ୍ରଭୃତି କଲ୍ଲୋଳ ଗୋଷ୍ଠିର କବିମାନଙ୍କର ବୈଶିଷ୍ଟ୍ୟ, କେବଳ ମୌଳ ପାର୍ଥକ୍ୟ ହିଁ ଦେଖାଯାଇଥାଏ ।

କାବ୍ୟ ରଚନାର ପ୍ରଥମ ପର୍ଯ୍ୟାୟରେ ତାଙ୍କର ରଚନା ମଧ୍ୟରେ ସତ୍ୟେନ୍ଦ୍ରନାଥ ଦତ୍ତଙ୍କର ଛନ୍ଦଦୋଳନ ଓ ଭାଷା ବିନ୍ୟାସର ଅନୁରଣନ ଲକ୍ଷ୍ୟ କରାଯାଇଥିଲା । କିନ୍ତୁ ଏହି ଅନୁରଣନ ପ୍ରକ୍ରିୟାର କାଳ ଥିଲା ସୀମିତ । ଖୁବ୍ କମ୍ ସମୟ ମଧ୍ୟରେ ଅଚିନ୍ତ୍ୟକୁମାର ନିଜକୁ ଆବିଷ୍କାର କରି ପାରିଥିଲେ । ବଳିଷ୍ଠ ଆତ୍ମପ୍ରତ୍ୟୟ ଭିତିରେ ସେ ନିଜକୁ ପ୍ରତିଷ୍ଠିତ କରି ପାରିଥିଲେ ଓ କ୍ରମଶଃ ସ୍ୱକୀୟ ବୈଶିଷ୍ଟ୍ୟ ପ୍ରତିପାଦିତ କରିପାରିଥିଲେ ।

ଅଚିନ୍ତ୍ୟକୁମାରଙ୍କର କବି ମନନ କଳା ମୁଖ୍ୟତଃ ପ୍ରେମପ୍ରଧାନ । କିନ୍ତୁ ପୃଥିବୀର ପରିବେଶ ମଧ୍ୟରେ ଏଇ ପ୍ରେମଚେତନା ଯେ ପରିତୃପ୍ତ ହୁଏ, ତାହା ନୁହେଁ । ସେହି ପ୍ରେମଚେତନା, ଜନ୍ମ ଜନ୍ମାନ୍ତର ମଧ୍ୟରେ ସଞ୍ଚିତ ହୋଇ ଜୀବନର ପାଥେୟ ହୋଇ ରହିଯାଏ । ସେହି ପ୍ରାପ୍ତି ଯେତେ କ୍ଷଣିକ ଓ ତୁଚ୍ଛ ହେଲେ ମଧ୍ୟ ପ୍ରାଣପକ୍ଷୀ କେବଳ ସ୍ନେହ ପ୍ରେମର ପ୍ରାପ୍ତିଗୁଡ଼ିକୁ ନେଇ ହିଁ ବସା ବାନ୍ଧେ ।

"ଚନ୍ଦ୍ର ଯବେ ତିଳେ ତିଳେ ଗଢ଼ା ଏଇ ନୀଡ଼/
ନିଭୃତ-ନିବିଡ଼,"—ଛାଡ଼ି, ପ୍ରାଣପକ୍ଷୀ ଅସୀମର ଆହ୍ୱାନ ଶୁଣି ଦିନେ ଉଡ଼ିଯାଏ । ତେବେ ବି ପ୍ରେମ ରହେ ଅନିର୍ବାଣ । କାରଣ ସେ "ଅସ୍ତିତ୍ୱର ସାର ଅଂଶ, ପ୍ରାଣର ପାଥେୟ ।" କବିଙ୍କର ଏଇ ପ୍ରେମଚେତନାରେ ସ୍ୱକୀୟା ଓ ପରକୀୟାଙ୍କର ପାର୍ଥକ୍ୟ ପରିସ୍ଫୁଟ । ସ୍ୱକୀୟାର ଗୌରବକୁ କ୍ଷୁଣ୍ଣ ନ କରି ପରକୀୟା ପ୍ରେମ ଚେତନାର ଗୌରବ ଘୋଷଣା କରି କବି କହିଛନ୍ତି—

ମହତ୍ତର ପରତନ୍ତ୍ର କିନ୍ତୁ ନେଇ ଏ ପ୍ରେମେ ର ତେ,
ସ୍ଥିତି ସୁଧୁ ପରମ ପ୍ରୀତିତେ
ଏଇ ପ୍ରୀତି ନିଜ ରସେ ରସମୟୀ, ମଦିର ସେ ମାଧୁର୍ଯ୍ୟେ ନିଜେର,
ଅନ୍ୟ କୋନୋ ଆକାଂକ୍ଷାଏ
ଏ କଖନୋ ନଏ ଛିନ୍ନ, ଆଚ୍ଛାଦିତ, ନଏ ବା ଖଣ୍ଡିତ,
ଏ ପ୍ରେମ ଶଶ୍ୱତ ତନ୍ମୟ ।

ଅଚିନ୍ତ୍ୟକୁମାରଙ୍କର ଦୃଷ୍ଟି ସମାଜ ଚେତନାର ବିଭିନ୍ନ ଦିଗକୁ ପ୍ରସାରିତ । କିନ୍ତୁ ଦେଶ ବିଭାଗର ବେଦନାମୟ ସ୍ମୃତି ବହୁକବିତାରେ ସୁସ୍ପଷ୍ଟ । ସେ ପୂର୍ବ ବଙ୍ଗର ସନ୍ତାନ, ଛାତ୍ର ଓ ପ୍ରଥମ ଜୀବନରେ ମହକୁମା ବିଚାରଳୟର ବିଚାରକ । ପଶ୍ଚିମବଙ୍ଗକୁ ଆସିଛନ୍ତି— ଦେଶ ବିଭାଗର ଅଳ୍ପକାଳ ପୂର୍ବେ । ପଶ୍ଚିମବଙ୍ଗକୁ ନିଜର ଆତ୍ମୀୟତା ମଧ୍ୟରେ ବାନ୍ଧି ପାରିଥିଲେ ମଧ୍ୟ ପୂର୍ବବଙ୍ଗ ପ୍ରତି ଥିବା ମୋହର ସ୍ମୃତି ଚିରକାଳ ଜାଗ୍ରତ ରହିଛି । ପୂର୍ବ ଓ ପଶ୍ଚିମ ମଧ୍ୟରେ ଏହି ବିଭାଜନକୁ ସେ କେବେହେଲେ ସ୍ୱୀକାର କରିପାରି ନାହାନ୍ତି । ତେଣୁ କବିତା ମଧ୍ୟରେ ଏହି ମନୋଭାବଟିକୁ ରୂପ ଓ ଭାବ ସୂତ୍ରରେ ଏକତ୍ର ବାନ୍ଧି ରଖିବାକୁ ଚେଷ୍ଟା କରିଛନ୍ତି ।

ଆମାଦେର ଏକ ସୁଖ, ଏକ କାୟା', ଏକ ପିପାସା
ଭୂଗୋଲେ ଇତିହାସେ ଆମରା ଏକ
ଏକ ମନ, ଏକ ମାନୁଷ; ଏକ ମାଟି, ଏକ ମମତା ।

ତୁମି ସୁଲତାନା, ଆମି ଅପୂର୍ବ
ଆମି ମହବୁବ୍, ତୁମି ଶ୍ୟାମଲୀ ।

ସାତ ପୁରୁଷର ଭିଟାମାଟି ଛାଡ଼ି ଯେଉଁମାନେ ପୂର୍ବବଙ୍ଗରୁ ପଶ୍ଚିମ-ବଙ୍ଗକୁ ଆସିଛନ୍ତି, ସେମାନେ ବାସ୍ତୁହରା ବୋଲି ଚିହ୍ନିତ । କବି ମାନଙ୍କ ସହିତ ଅନ୍ୟ ଏକ ଶ୍ରେଣୀର 'ଉଦ୍‌ବାସ୍ତୁ'ଙ୍କୁ ଦେଖିବାକୁ ପାଇଛନ୍ତି । ଏମାନେ ଦିନେ, "ଜେଲ୍ ଖେଟେଛେ/ତକଲୀ କେଟେଛେ । ହତ୍ୟେ ଦିଏଛେ ସତ୍ୟେର ଦୁୟାରେ ।" ସେମାନେ ସ୍ୱାଧୀନତା ପରେ; "ଛୁଟଲୋ ଦିଶେହାରା ହଏ— ଏତୋ ଦିନେର ପରିଶ୍ରମେର ବେତନ ନିତେ—ମସ୍ନଦେ ଗଦୀୟାନ ହଏ

ଚୋପଡେ "। କବିଙ୍କର ଘୋଷଣା, "ହେଁ ।  ଓଗଓ ଉଦବାସ୍ତୁ । କେଉ ଉତ୍-ଖାତ୍ ଭିଟେମାଟି ଥେକେ—କେଉ ଉତ୍‌ଖାତ୍ ଆଦର୍ଶଥେକେ "।

ଅଚିନ୍ତ୍ୟକୁମାର ତାଙ୍କର କବିତା ମଧ୍ୟରେ ଶବ୍ଦନିର୍ମାଣ ଓ ଶବ୍ଦ ଯୋଜନାର ବୈଶିଷ୍ଟ୍ୟ ପ୍ରତିପାଦିତ କରିଛନ୍ତି । ଶେଷ ବୟସର ଗଦ୍ୟ ରଚନାରେ ମଧ୍ୟ ଭାଷାର ଏଇ ବୈଶିଷ୍ଟ୍ୟ ଲକ୍ଷ୍ୟ କରଯାଏ । ଶବ୍ଦଗଠନ ସମ୍ପର୍କରେ ବିଶେଷ ଅର୍ଥରେ ବ୍ୟବହାରର ଉଦାହରଣ ଏଇଭଳି—

ଅବ୍ୟର୍ଥ କାଲଦ୍ରେ ଥାକେ।
ପରିଣତି ହୋକ୍ ପୂର୍ଣାଙ୍ଗୀନ
ଉର୍ଦ୍ଧ୍ୱ୍ୟା ସକ୍ରିୟା ଖକ୍ତି
ଚିରନ୍ତନ ରଖୁକ୍ ନବୀନ ।

ଶବ୍ଦ ନିର୍ମାଣ ଓ ଯୋଜନା ସମ୍ପର୍କରେ ତାଙ୍କର ଧାରଣା ଥିଲା ଯେ—

ସୁଧୁ କାବ୍ୟ ଗଠନେର ସୁଧୁ ଶବ୍ଦ ସ୍ପନ୍ଦନେର ମଦ
ସମସ୍ତ ବ୍ୟାଧିର ମହୌଷଧ ।
ସୁଧୁ ଏକ ଶୋଭମୟୀ ଧନୀର ଉତ୍‌ସାର—
ସମସ୍ତ ମୃତ୍ୟୁର ଅସ୍ୱୀକାର ।

ଆଧୁନିକ ଯୁଗର କବିତା ମାତ୍ରେ ଯେ ନୈରାଶ୍ୟ, ବିଦ୍ରୂପ ଓ ପାର୍ଥିବ-ବାଦଦ୍ୱାରା ପ୍ରଭାବିତ ନୁହେଁ, ତାର ପ୍ରମାଣ ଅଚିନ୍ତ୍ୟକୁମାରଙ୍କ ରଚନାରେ ସୁସ୍ପଷ୍ଟ । ତାଙ୍କର କବିତାଗୁଡ଼ିକ ମଧ୍ୟରେ ବୁଦ୍ଧି ଓ ବୋଧିର ଯେଉଁ ବାସ୍ତବ-ଭିତ୍ତିକ ସମନ୍ୱୟ ଘଟିଛି, ତାହାକୁ ନବ୍ୟ-ରୋମାଣ୍ଟିକବାଦ ବୋଲି ଚିହ୍ନିତ କରଯାଏ । ସମାଜ ସଚେତନତା ଓ ସହାନୁଭୂତିର ଅକୃତ୍ରିମ ସଂପୂର୍ଣ୍ଣତା ଅଚିନ୍ତ୍ୟକୁମାରଙ୍କର କବିକୃତିକୁ କେବଳ ରୂପ ଔଜଲ୍ୟ ଦେଇ ନାହିଁ, ଦେଇଛି ସ୍ଥାପତ୍ୟଧର୍ମୀ ନିବିଡ଼ତା । ଅଚିନ୍ତ୍ୟକୁମାର ଥିଲେ ବିଶ୍ୱବିଦ୍ୟାଳୟର ଜଣେ କୃତୀ ଛାତ୍ର । ତେଣୁ ସ୍ୱାଭାବିକ୍‌ଭାବେ ବିଶ୍ୱ ସାହିତ୍ୟ ସହିତ ତାଙ୍କର ପରିଚୟ ଘଟିଥିଲା । ତେଣୁ ତାଙ୍କ ରଚନାରେ ବିଶ୍ୱମାନବର ଜୀବନ ଯନ୍ତ୍ରଣା ସୁସ୍ପଷ୍ଟ । ସେଇ ଦୃଷ୍ଟିରୁ ଅଚିନ୍ତ୍ୟକୁମାରଙ୍କ ପରି କବିମାନେ ବିଶ୍ୱ ନାଗରିକ ।

ଅଚିନ୍ତ୍ୟକୁମାରଙ୍କ ସଂକଳନରେ ପ୍ରାୟ ଛ'ଶହ କବିତା ସ୍ଥାନ ପାଇଛି । କିନ୍ତୁ ଏଗୁଡ଼ିକ ଅଚିନ୍ତ୍ୟକୁମାରଙ୍କ ଖିଆଲୀମନର ସୃଷ୍ଟି ବୋଲି ଉପେକ୍ଷା କରଯାଇ

ପାରିବ ନାହିଁ । ଆମେମାନେ ଜାଣିଛୁ ଯେ କଥା ସାହିତ୍ୟର ଅନେକ ସ୍ରଷ୍ଟା କବିତାର ପଥ ଆବିଷ୍କାର କରି, ସାହିତ୍ୟ ଦରବାରରେ ଉଭା ହୋଇଛନ୍ତି । କିନ୍ତୁ ସେମାନେ ପ୍ରତିଷ୍ଠା ଲାଭ କରିଛନ୍ତି, ସାହିତ୍ୟର ଅନ୍ୟାନ୍ୟ ବିଭାଗରେ । ସେ କ୍ଷେତ୍ରରେ କବିତା ସେମାନଙ୍କର ଗୌଣ ରଚନା, ମୁଖ୍ୟ ନୁହେଁ । ଅଚିନ୍ତ୍ୟକୁମାର କିନ୍ତୁ ସବ୍ୟସାଚୀ । ତାଙ୍କର ଉପନ୍ୟାସ ବେଦେ, ପ୍ରଥମ ପ୍ରେମ ଓ ଜୀବନୀ ଭାବରେ ପରମଗୁରୁ ଶ୍ରୀ ଶ୍ରୀ ରାମକୃଷ୍ଣ, କବି ରାମକୃଷ୍ଣ ପାଠକମାନଙ୍କୁ ଯେପରି ଆବିଷ୍ଟ କରିପାରେ, ସେ ତୁଳନାରେ ତାଙ୍କର କବିତାଗୁଡ଼ିକର ଶକ୍ତି କମ୍ ନୁହେଁ । ପ୍ରକୃତ ପକ୍ଷରେ ତାଙ୍କର ଆକାଂକ୍ଷା ଥିଲା ସୁଦୂରପ୍ରସାରୀ । "ହୃଦୟର ତୃପ୍ତିହୀନ କ୍ଷୁଧାର ପ୍ରକାଶ"ବହୁ କବିତାରେ ସୁସ୍ପଷ୍ଟ । ତାଙ୍କର ବକ୍ତବ୍ୟ ଥିଲା—

ଆମି ନା ଈଶ୍ୱର ହୋଲେ ଈଶ୍ୱରେର ଉପଲବ୍‌ଧି କୋଥା
ଯେଇ ଅବଧି—ଲବ୍‌ଧିତେଇ ଚିତ୍ତ ଭରି ଆଛେ ପ୍ରସନ୍ନତା
ତାଇ କି ଏ ଜାନାଇ ଏ ଜୀବନେର ପୂର୍ଣ୍ଣ କୃତଜ୍ଞତା ।

ଏହାହିଁ ଥିଲା ଅଚିନ୍ତ୍ୟକୁମାରଙ୍କର ଜୀବନଚର୍ଯ୍ୟା ।

—o—

■ ସାତକଡ଼ି ହୋତା

# ଅନ୍ତଃସ୍ୱର

ଦଶ ବର୍ଷ ପରେ ସେଦିନ ଅଭିଷେକ ସହିତ ମୋର ସାକ୍ଷାତ ହେଲା ଆକସ୍ମିକ ଭାବରେ । ମୁଁ ମୋ ସ୍ୱାମୀଙ୍କ ସହିତ ଯାଇଥିଲି ବନବାବୁଙ୍କ ଝିଅର ବାହାଘର ରିସେପ୍‌ସନ୍‌କୁ । ଆମେ ଖାଇ ସାରି ହାତ ଧୋଇବାକୁ ଉଠୁଥିବାବେଳେ ଠିକ୍ ସାମ୍ନାରୁ କହିଲା, "ଅଭିଷେକ, ତୁ ଏଇଠି ବସିଛୁ । ଆଉ ମୁଁ ଦଶ ବର୍ଷ ହେଲା ଖୋଜୁଛି । ମିଷ୍ଟରଙ୍କ ସହିତ ପରିଚୟ କରାଇ ଦେ ....।" ଅଭିଷେକକୁ ଅମୂଲ୍ୟଙ୍କ ସହିତ ପରିଚୟ କରାଇ ଦେଇ କହିଲି, "ଅଭିଷେକ ମୋର ବାଲ୍ୟବନ୍ଧୁ । ବାରିପଦାରେ ଏକା ସାଙ୍ଗରେ ପାଠପଢ଼ା । ତା ବାପା ଏବଂ ମୋ ବାପା ସେଇ ବାରିପଦାରେ ଏକା ସାଙ୍ଗରେ ଚାକିରୀ କରିଥିଲେ ପ୍ରାୟ ପନ୍ଦର ବର୍ଷ । ବଦଳି ନାହିଁ, ଚିରସ୍ଥାୟୀ ଭଳି ଗୋଟେ ଜାଗାରେ ରହି ଯାଇଥିଲେ ଅନେକ ବର୍ଷ ।" ଅମୂଲ୍ୟ ଖୁସିହେଲେ ଅଭିଷେକ ସହିତ ସଂପର୍କରେ ଆସି ।

ଆମେ ହାତ ଧୋଇ ସାରିବାବେଳକୁ ଅମୂଲ୍ୟଙ୍କ ହାତକୁ ପାନ ଓ ସିଗାରେଟ୍ ବଢ଼ାଇଦେଇ ସେ କହିଲା, "ବନୁବାବୁ ପରା ମୋ ଭିଣୋଇ । ମାମୁଁ ହୋଇ ଭାଣିଜୀର ବାହାଘରକୁ ଆସିଛି । ବେଶ୍ ବ୍ୟସ୍ତ ଅଛି ଦୁଇଦିନ ।"

ଅଭିଷେକକୁ ମୁଁ କେବେ ବ୍ୟସ୍ତ ହବାର ଦେଖି ନାହିଁ; ବରଂ ବ୍ୟସ୍ତତା ଭିତରେ ସେ ବେଶ୍ ସ୍ୱାଭାବିକ୍ ଭାବରେ ସହଜ ହୋଇ ରହିପାରେ । ସେଥିପାଇଁ ଆଜି ମଧ୍ୟ ତା ମୁହଁ ଉପରେ ବ୍ୟସ୍ତତାର କୌଣସି ଆଭାସ ନପାଇ ମୁଁ କହିଲି, "ତୁ କେତେ ବ୍ୟସ୍ତ ତୋ ଚାଲିଚଳଣିରୁ ଜଣାପଡୁଛି ।" ଅମୂଲ୍ୟ ହସି ଦେଇ କହିଲେ, "ଚାଲିବାବେଳେ ବା ପାନ ସିଗାରେଟ ଦବାବେଳେ ସେ କଣ ଦୌଡ଼ାଦୌଡ଼ି କରୁଥାଆନ୍ତେ ଘରେ ନିଆଁ ଲାଗିଲେ ଲୋକେ ଯେପରି ବ୍ୟସ୍ତ ହୋଇ ଦୌଡ଼ାଦୌଡ଼ି କରନ୍ତି । ବ୍ୟସ୍ତ ଥାଇବି ବ୍ୟସ୍ତତା ଦେହକୁ, ମନକୁ ଲାଗୁ ନଥିବା ସମସ୍ତଙ୍କ ପାଖରେ ହୁଏ ନାହିଁ ।" ଅମୂଲ୍ୟ ଅଭିଷେକକୁ ଡିପେଣ୍ଡ

କରୁଥିବାର ଦେଖି ମୁଁ କହିଲି, "ତୁମ ଦୁହିଁଙ୍କ ଭିତରେ ଏଇ ପ୍ରଥମ ସାକ୍ଷାତ ନା ?' ଅଭିଷେକ ଆହୁରି ନିକଟତର ହବା ପାଇଁ କହିଲା, "ସାକ୍ଷାତ ଏଇ ପ୍ରଥମ ନୁହେଁ, ହୁଏତ ଆଉ କାହିଁ ହୋଇଥିବ; କିନ୍ତୁ ଆଜି ଆମେ ଉଭୟ ଉଭୟଙ୍କୁ ଜାଣିଲୁ । ତୁ ଯେ ତାଙ୍କୁ ବାହା ହୋଇଛୁ ଏଇଟା ମୋ ପାଖରେ କେବଳ ଖବର ହୋଇ ରହିଯାଇଥିଲା ଆଜିଯାଏ । ଯାହାହେଉ ଆଜି ବନ୍ଧୁଙ୍କ ଘରେ କେବଳ ଶୁଭଦିନ ପାଳିତ ହେଉନାହିଁ, ଆମ ଭିତରେ ସମ୍ପର୍କଟିଏ ପୁଣି ନୂଆ କରି ସ୍ଥାପିତ ହେଲା ।

ମୁଁ ଅଭିଷେକକୁ ଦେଖୁଥାଏ । ସେ ଜମା ବଦଳି ନାହିଁ । ବୟସ ବଢ଼ି ଥିଲେ ବି ତା ଦିହ ମନ ଆଗ ପରି ତରୁଣ ହୋଇ ରହିଯାଇଛି । ଅଭିଷେକକୁ ଏକ ଦେଖି ମନଟା ଗରଗର ହେଉଥାଏ ପଚାରିବା ପାଇଁ ସେ ଏକା ଆସିଛି ନା ଦୁଇଜଣ ଆସିଛନ୍ତି । ତାଙ୍କ ସହିତ ପରିଚୟ ଏଯାଏ ହେଲାନାହିଁ ଯେ ..... । ଅମୂଲ୍ୟ ମୋତେ ଏଇ ପ୍ରଶ୍ନଟା ପଚାରିବାରୁ ମୁକ୍ତି ଦେଇ କହିଲେ, "ଆପଣ ଏକା ଆସି ନାହାନ୍ତି, ମିସେସ୍ ବି ଆସିଥିବେ, ଦେଖା ହୋଇପାରିବ ?" ଅଭି-ଷେକ ଫିକ୍ କିନା ହସିଦେଇ କହିଲା, "ଅର୍ଚ୍ଚନା ଆପଣଙ୍କୁ କହି ନାହିଁ ? ସେ ମୋତେ ଯିମିତି ଦେଖିଥିଲା ଆଜି ବି ମୁଁ ସେପରି ଅଛି । ଏକରୁ ଦୁଇ ହବା ପାଇଁ ସମୟ ପାଇ ନାହିଁ ।" ଅମୂଲ୍ୟ ହଠାତ୍ କହି ପକେଇଲେ, "କାହା ଉପରେ ଅଭିମାନ କରି ଏଇ ଭୁଲ୍ କଲେ ? ସେ କଣ ଆଉଟ ଅଫ୍ ବାଉଣ୍ଡ ହୋଇ ରହିଗଲେ ?"

ଅଭିଷେକ ମୋ ମୁହଁକୁ ଚାହିଁଲା ବୋଧେ, ମୁଁ କିନ୍ତୁ ସିଧା ହୋଇ ତା ଆଡକୁ ଚାହିଁ ନ ଥିଲି ବୋଲି ଜାଣିପାରିଲି ନାହିଁ । 'ସରୋଜିନୀ ଚାଲିଯାଉଥିଲେ, ତାଙ୍କୁ ମୁଁ କହିଲି, "ତରତର ହୋଇ ଚାଲିଯାଉଛ ଯେ .....।" ମୁଁ ଯେ ସରୋଜିନୀ ସହିତ କଥାଭାଷା ହବା ପାଇଁ ବ୍ୟଗ୍ର ଥିଲି ତାହା ନୁହେଁ, ଅମୂଲ୍ୟ ମୋ ମୁହଁ ଦେଖି ଆଉ କଅଣ ଭାବି ପାରନ୍ତି ବୋଲି ମୁଁ ଚାହୁଁ ନଥିଲି । ଅଭିଷେକ ଆଡକୁ, ବରଂ ଆଖି ଘୁରେଇଥିଲି ଅନ୍ୟ ଆଡକୁ । ଅମୂଲ୍ୟ କହିଲେ, ଆଜି ଏଇ ଭିଡ଼ରେ ଆପଣଙ୍କ ପାଖରୁ ଏହାର ଉତ୍ତର ପାଇବାର ଆଶା ନାହିଁ, କିନ୍ତୁ ପରେ କହିବେ । ଅମୂଲ୍ୟ ଖୁସି ହୋଇ କହିଲା; ବହୁ ସୁଯୋଗ ମିଳିବ କଥାଭାଷା ହେବା ପାଇଁ । ଆପଣ ଆସିବେ ନିଶ୍ଚୟ ।

ଅମୂଲ୍ୟ ମୋତେ ନ ପଚାରି ଅଭିଷେକକୁ ନିମନ୍ତ୍ରଣ କରିଦେଲେ ଆସିବା ପାଇଁ । ସରୋଜିନୀ ସହିତ ମୁଁ କଥା ଶେଷ କଲାବେଳକୁ ସେ ମୋତେ

କହିଲେ, ତୁମ ଅନୁମତି ଥିବ ବୋଲି ମୁଁ ଅଭିଷେକବାବୁଙ୍କୁ ଡାକିଦେଇଛି ଆମ ଘରକୁ ଆସିବା ପାଇଁ । ରବିବାର ସଂଧ୍ୟାବେଳେ ସେ ଆମଘରେ ଖାଇବେ । ମନେଥାଏ ଯେପରି । ମୁଁ ରକ୍ଷା ପାଇଗଲି । ଅଭିଷେକକୁ ନିମନ୍ତ୍ରଣ କରିବା ପାଇଁ ଅମୂଲ୍ୟଙ୍କୁ ଆଉ ମୋତେ କହିବାକୁ ପଡ଼ିଲା ନାହିଁ । ଅତିଥିମାନଙ୍କୁ ସେ ଆମନ୍ତ୍ରଣ କରନ୍ତି ଯେପରି, ସେମାନଙ୍କ ଆସିବା ତାରିଖଟାକୁ ସେହିପରି ଖୁବ୍ ଶୀଘ୍ର ଭୁଲିଯାଆନ୍ତି । ଭାଗ୍ୟକୁ ମୋର ସ୍ମରଣ ଶକ୍ତି ଏ ଦିଗରେ ବେଶୀ ବୋଲି ଅନେକ ଅପ୍ରୀତିକର ଅବସ୍ଥାରୁ ରକ୍ଷା ପାଇ ଯାଇଛନ୍ତି ଅମୂଲ୍ୟ । ଦିନେ ଦିନେଶବାବୁଙ୍କୁ ଡାକି ଦେଇ ମୋତେ କହିବାକୁ ବୋଧେ ଭୁଲିଯାଇଥିଲେ । ସେଦିନ ମୋତେ ନେଇ ସିନେମା ଯାଇଥାନ୍ତି । ହାଫ୍ ଟାଇମ୍ ହେବାକୁ ପାଞ୍ଚ ମିନିଟ ବାକୀ ଥାଏ । ସେ ହଠାତ୍ କହିପକାଇଲେ, ଆରେ ! ଗୋଟେ ମସ୍ତବଡ଼ ଭୁଲ୍ ହୋଇଯାଇଛି । ଦିନେଶକୁ ମୁଁ ଡାକିଛି ଖାଇବା ପାଇଁ ସେ ..... । ସେ ସସ୍ତ୍ରୀକ ଆସି ଆମକୁ ନଦେଖି ଯଦି ଫେରି ଯାଇଥାଏ ..... । ମୁଁ ସେଦିନ ମଧ୍ୟ ତାଙ୍କୁ ରକ୍ଷା କରିଥିଲି । ଆମେ ସଙ୍ଗେସଙ୍ଗେ ସିନେମା ହଲ୍ ଛାଡ଼ି ଘରକୁ ଫେରିଲୁ । ଯାହା ଭାବିଥିଲୁ ସେୟା ଘଟିଲା । ଦିନେଶ ସସ୍ତ୍ରୀକ ଆମ ଘରକୁ ଆସି ଆମକୁ ନ ପାଇ ଫେରିଯିବାକୁ ବସିଛନ୍ତି, ଆମେ ପହଞ୍ଚିଯିବାରୁ ପରିବେଶଟି ଟିକେ ହାଲୁକା ହୋଇଗଲା । ତାଙ୍କ ମିସେସଙ୍କ ମୁହଁ ଉପରୁ ଅବଜ୍ଞାର ରେଖା ଦୂର କରିବା ପାଇଁ ମୁଁ ଉପସ୍ଥିତ ବୁଦ୍ଧି ବଳରେ କହିଥିଲି, ଚାଲଚାଲ; ଆମେ ଆଜି ଘରେ ନଖାଇ ବାହାରେ ଖାଇବା । ସେଥିପାଇଁ ଆଗରୁ କହି ଆସିବା ପାଇଁ ଦୁହେଁ ଯାଇଥିଲୁ ପ୍ରାଚୀକୁ । ଆସୁଆସୁ ଦଶମିନିଟ ଡେରି ହୋଇଗଲା । ଦିନେଶବାବୁ ବୁଝିଗଲେ । ତାଙ୍କ ସ୍ତ୍ରୀ ମଧ୍ୟ କଥାଟା ସତ ହୋଇଥିବ ବୋଲି ହୁଏତ ଭାବିନେଇ ଆଉ କିଛି କହି ନଥିଲେ ।

ସେଦିନର କଥା ମନେଥିଲା ମୋର । ମୁଁ କହିଲି, ତୁମ ଭାଇରୀଟା ଦେଖି ନେଇଥିଲେ ଭଲ କରିଥାଆନ୍ତ ..... ତୁମର ଆଉ କିଛି ଏନ୍‌ଗେଜ୍‌ମେଣ୍ଟ ଅଛି କି ନାହିଁ .... । ଅମୂଲ୍ୟ କହିଲେ, ଥିଲେ ମୁଁ କେନେସେଲ୍ କରିଦେବି, ତୁମେ କେବଳ ରାଜି ହେଲେ ହେଲା । ମୁଁ ଅମୂଲ୍ୟଙ୍କୁ ଭଲଭାବରେ ଜାଣେ । ସାତବର୍ଷର ବିବାହିତ ଜୀବନ ଯଥେଷ୍ଟ ପରସ୍ପରକୁ ଜାଣିବା ପାଇଁ । ଅମୂଲ୍ୟ ସେ କେବେ ଗୋଟିଏ ଏନ୍‌ଗେଜମେଣ୍ଟ ପାଇଁ ଆଗରୁ ସ୍ଥିର ହୋଇଥିବା ଏନ୍‌ଗେଜମେଣ୍ଟର ପରିବର୍ତ୍ତନ କରନ୍ତି ନାହିଁ ଏକଥା ମୋ ବ୍ୟତୀତ ଆଉ କିଏ ବେଶୀ ଜାଣେ ? ଛୋଟ ହେଉ, ବଡ଼ ହେଉ ସେ ଏନ୍‌ଗେଜମେଣ୍ଟ ରକ୍ଷାକରନ୍ତି,

ସମୟ ନିର୍ଘଣ୍ଟ ପାଳନ କରନ୍ତି, ତାଙ୍କୁ ଚେତେଇ ଦେବା ପାଇଁ ମୁଁ ପାଖେ ପାଖେ ଥାଏ ସ୍ମାରକ ପରି । ସେ ମୋତେ ଦିନେ କହିଥିଲେ, ବାହାଘର ପରେ ଅର୍ଚ୍ଚନା, ତୁମ ମୋ ଭିତରେ ଗୋପନୀୟ ହୋଇ ଆଉ କିଛି ରହିନାହିଁ ଯେତେବେଳେ ମୋର ଭୁଲାମନକୁ ଜାଗ୍ରତ କରିବାର କାମଟା ତୁମକୁ ନବାକୁ ହବ । ତୁମେ ମନେ ପକେଇ ଦବ, ଭୁଲି ଯାଉଥିଲେ ଚେତ କରେଇ ଦବ । ସେଇଦିନୁ ଏଡି ଆଦେଶ ମୁଁ ପାଳି ଆସିଛି, ଦିନେଶବାବୁଙ୍କ ସମ୍ପର୍କିତ ଘଟଣାକୁ ଛାଡି ଆଉ କେଉଁପରି ବ୍ୟତିକ୍ରମ ହୋଇନାହିଁ । ସେ ଭୁଲିଯାଉଥିବାବେଳେ ଠିକ୍ ସମୟରେ ମୁଁ ମନେ ପକେଇ ଦେଇଛି ।

ମୁଁ କହିଲି, ହଉହେଲା, ଅଭିଷେକକୁ କଅଣ ଖୁଆଇବ ସେ ଦାୟିତ୍ୱ ତୁମର ।

ଅଭିଷେକ କହିଲା, ତୁ ଯେପରି କହୁଚୁ ତାଙ୍କୁଇ ରନ୍ଧିବାକୁ ହବ ..... କିଏ ରନ୍ଧେ, ସେ ନା ତୁ ?

ଅମୂଲ୍ୟ କହିଲେ, ଆପଣ ଠିକ୍ କଥା କହିଛନ୍ତି । ମୋ ଉପରେ ସବୁ ଦାୟିତ୍ୱ ପକେଇ ଦେଇ ଛୁଟି ନେବା ଅର୍ଚ୍ଚନାର ଗୋଟେ ବଡ ଅଭ୍ୟାସ ।

ଅଭିଷେକ ମୋ ମୁହଁକୁ ଚାହିଁଲା । ସେ ଚାହାଣିରୁ ଜଣାପଡୁଥିଲା ଯେପରି ଆଗରୁ ସେ ଏଇ କଥାଟା ଜାଣିଛି । ଅଭିଷେକକୁ ବିଶ୍ୱାସ ନାହିଁ । କାଳେ ସେ କହିଦେଇପାରେ ବୋଲି ମୁଁ ଆଗୁଆ ହୋଇ କହିଲି, ତୁମେ ଏଇ କଥା କହିପାରୁଛ ? ମୁଁ ନଥିଲେ ତୁମ ଘରସଂସାର ଚଳନ୍ତା ଏପରି ଏପସିଏଣ୍ଟ ଭାବରେ ..... ।

ଅଭିଷେକ ମୋ ପକ୍ଷ ନନେଇ ଅମୂଲ୍ୟଙ୍କ ପକ୍ଷ ନେଇ କହିଲା, ତୁ କଅଣ ବସିଥାଆନ୍ତୁ ରାଣୀ ପରି, କୌଣସି ଦାୟଦାୟିତ୍ୱ ତୁଲାନ୍ତୁନି ..... ।

ଅମୂଲ୍ୟ କହିଲେ, ତାଙ୍କୁ ଦେଖିଲେ ଏହାର ଉତ୍ତରଟା ଆପେ ଆପେ ମିଳିଯାଏ ।

ମୁଁ ଟିକେ ରାଗିଗଲି । ମୋ ଉପରେ ସଦାବେଳେ ଆଖି ପକାନ୍ତି ଅମୂଲ୍ୟ । ତାଙ୍କର ବୟସ ବଢୁଛି, ମୋର ବଢୁନାହିଁ ବୋଲି ତାଙ୍କର ଅବଶୋଷ । କିନ୍ତୁ ମୁଁ କଅଣ କରିବି ? ଯେତେ କହିଲେ ବି ସେ ମିଠା ଛାଡିବେ

ନାହିଁ କି ଘୃତହୀନ କୁଭୋଜନ କରିବେ ନାହିଁ । ଦୈହିକ ଶ୍ରମ ତ ବିଲ୍‌କୁଲ୍ ନାହିଁ । ମେଦ ବଢୁଛି, କେଶ ତପ୍ତୁଡ଼ିଯାଇ ମଥାଟା ଖାଲି ହୋଇଗଲାଣି । ମୁଁ କିନ୍ତୁ ମୋ ବିଷୟରେ ସଚେତନ । ସେ କୁହନ୍ତି ସାତବରଷ ମୁଁ ଏହାପରି ଅଛି । କୌଣସି ପରିବର୍ତ୍ତନ ହୋଇନାହିଁ । ନିଜ ସ୍ୱାମୀ ପାଖରୁ ଏପରି ସୁପାରିଶ ପତ୍ର ପାଇବା କମ୍ ଗୌରବର କଥା ନୁହେଁ, ତଥାପି ମୁଁ ଲାଜେଇ ଯାଇ କହିଲି, ବାଜେ କଥା କହିବାରେ ତୁମେ ଧୁରନ୍ଧର ..... ।

ଅମୂଲ୍ୟ ମୋ ମୁହଁର ଭାବ ଜାଣିବା ପାଇଁ କହିଲେ, ଫିଲ୍ମରେ ଏବେ ବି ଜିତାର ଅସୁବିଧା ନାହିଁ, ଚିରକୁମାରୀ ପରି ଚେହେରା ।

ଅଭିଷେକ ମୋ ଆଡ଼କୁ ଚାହିଁ ବଙ୍କେଇ ହସିଲା । ମୁଁ ରାଗିଯାଇ କହିଲି, ପୁରୁଷମାନେ ଥିବା ଯାଏ କୁମାରୀ ରହିବେ ନାହିଁ । ଲାଜ ଲାଗୁନି, ଦାନ୍ତରେ ହାଣ୍ଡି ଭଙ୍ଗୁଛ ।

ଅମର କଥାଶୈଳୀକୁ ବେଶ୍ ଉପଭୋଗ କରୁଥାଏ ଅଭିଷେକ । ସେ ସବୁ ଭୁଲି ଆମ ସହିତ ଯେ ଏତେବେଳଯାଏ ଗପୁଥାଏ ଏଥିରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ । ସେ ଏହିପରି । କାମ ଭିତରେ ମନକୁ ହାଲୁକା କରି ନବାର କଳା ଏକା ତାକୁ ଜଣାଅଛି । ସେ ବୋଧହୁଏ ମୋର ଲଜ୍ଜ୍ୟା ନିବାରଣ କରିବା ପାଇଁ ଉଚିତ୍ ମନେ କଲା ଯେପରି ଶ୍ରୀକୃଷ୍ଣ ଉଚିତ୍ ମନେ କରିଥିଲେ ଦ୍ରୌପଦୀର ଲଜ୍ଜ୍ୟା ନିବାରଣ କରିବା ସକାଶେ । 'ଅଭିଷେକ କହିଲା, ଅର୍ଚ୍ଚନା ସଙ୍ଗରେ ପାରିବେ ନାହିଁ ଆପଣ । ସେ ତର୍କଶାସ୍ତ୍ରରେ ପ୍ରଥମ ହୋଇଥିଲା ୟୁନିଭରସିଟିରେ । ଏସବୁ ଗପ ଅନ୍ୟଥର ଥାଉ, ମୁଁ କଥା ଦେଲି, ନିଶ୍ଚୟ ଆସିବି । ସେଦିନ ଶୁଣିବି ସବୁ ।

ଅମୂଲ୍ୟ କହିଲେ, ମୋର ଗର୍ବହୁଏ ୟାଙ୍କ ପାଇଁ । ମୋତେ କେତେଜଣ ପ୍ରତ୍ୟୁଷର ଅପ୍ରୋଚ କରିଥିଲେ ବୋଲି ହଠାତ୍ କହି ପକେଇଲେ, ନୋହିଲେ କଥାଟା ସିକ୍ରେଟ ହୋଇ ରହିଯାଆନ୍ତା ମନରେ .... ।

ଅଭିଷେକ ମୋର ସର୍ବାଙ୍ଗରେ ଆଖି ବୁଲେଇ ନେଲାପରି ମୁଁ ଅନୁଭବ କଲି । ସେ ବୋଧହୁଏ ନୂଆକରି ମୋତେ ଦେଖୁଥିଲା । ମୁଁ ସଚେତନ ହୋଇ କହିଲି, ଚାଲ ଯିବା ..... ।

ଆମେ ସେଦିନ ଫେରି ଆସିବାବେଳକୁ ରାତି ଏଗାରଟା । ମୋତେ ପାଖକୁ ଟାଣି ଆଣି ଅମୂଲ୍ୟ କହିଲେ, ତୁମେ ପ୍ରତିଦିନ କୁମାରୀ ..... ।

ତାପରେ ଅଭିଷେକ ଏ ଭିତରେ ଆମ ଘରକୁ ତିନିଥର ଆସିଛି । ବନୁବାବୁ ଘରକୁ ସାତଦିନ ଛୁଟି ନେଇ ଆସି ପନ୍ଦରଦିନ ରହିଯାଇଛି । ତାର ସମୟକୁ ଭାଗ ନେଉଛୁ ଆମେ, ଅର୍ଥାତ୍ ବି । ପ୍ରାତା, ରକ୍‌ସି ଏବଂ ପାର୍କ-ଭାଉଚରେ ସେ ଆମକୁ ଚର୍ଚ୍ଚା କରିଛି । ସିନେମା ଦେଖାଇଛି । ସିନେମା ହଲ୍‌ରେ ବସିବାବେଳେ ସତର୍କ ହୋଇ ମୁଁ ପ୍ରଥମ ଧାଡ଼ିରେ ପ୍ରଥମ ଆସନଟି ଦଖଲ କରେ । ତା ପରଟି ଅମୂଲ୍ୟ ଏବଂ ତୃତୀୟଟି ଅଭିଷେକ ପାଇଁ ଛାଡ଼ି ଦେଇ । ଅଭିଷେକ ଏବଂ ମୋ ଭିତରେ ବ୍ୟବଧାନ ରହିବା ଭଲ । ମୁଁ ଏଇ ପୁରୁଷମାନଙ୍କୁ ଚିହ୍ନେ । ସେମାନେ ଯଦି ସବୁ କଥା କହିପାରୁଥାଆନ୍ତେ । ଏହା ଛଡ଼ା ଅମୂଲ୍ୟଙ୍କୁ ସନ୍ଦେହ କରିବାର ଅନାବଶ୍ୟକ ସୁଯୋଗ ମୁଁ ଦେବା ପାଇଁ ଚାହୁଁ ନଥିଲି । ଅମୂଲ୍ୟ କିନ୍ତୁ ଅନ୍ୟ ରକମର । ତାଙ୍କ ମୁଣ୍ଡରେ ଥରେ ଯାହା, ପଶିଯାଏ ସେଇଟାକୁ ସେ ଯାକି ଧରନ୍ତି । ସେ ସ୍ଥାନ ପରିବର୍ତ୍ତନ କରି ମୋତେ ମଝିରେ ବସେଇ ମୋ ଡାହାରେ ନିଜେ ବସି ମୋ ବାମ ପାଖକୁ ବସାନ୍ତି, ଅଭିଷେକକୁ । ତାପରେ କୁହନ୍ତି, ଆମେ ଦୁଇଜଣ ତୁମର ରକ୍ଷୀଗାର୍ଡ ..... । ମନର ପ୍ରହରୀ ତୁମେ ନିଜେ ..... । କାଳେ ତାଙ୍କ ମନରେ ସନ୍ଦେହ ହବ ବୋଲି ମୁଁ କହେ, ସେଇ ସମୟ ଅତୀତ ହୋଇଯାଇଛି ..... ବରଂ ପୁରୁଷ-ମାନଙ୍କର ସମୟ କେବେ ଅତୀତ ହୁଏ ନାହିଁ, ମନଟା ସବୁଜ ହୋଇ ରହି-ଯାଏ ଚିର ସବୁଜ ଅରଣ୍ୟ ପରି । ସିନେମା ଦେଖା ବି ହୁଏ, ଗଳ୍ପ ବି ହୁଏ ।

ଦିନେ କହିଲା ଅଭିଷେକ, ସେ ଅରଣ୍ୟର ବାଘଭାଲୁ ..... ..... । କହୁ କହୁ ରହିଗଲା ସେ । ଅମୂଲ୍ୟ କହିଲେ, ପୁରୁଷମାନଙ୍କ ଉପରେ ତୁମର ଅନେକ ଅଭିଯୋଗ .... । ଏହାର କାରଣ କିଛି ଅଛି ?

ମୁଁ କିଛି କହିବା ଆଗରୁ ଅଭିଷେକ କହିଲା, ଗରୀବ ମାଇପ ସମସ୍ତଙ୍କ ଶାଳି । ଗୁବିକାଠି ଯାହା ହାତରେ ସିଏ ଅନ୍ୟକୁ କିପରି ଦୋଷ ଦିଏ ଟଙ୍କା ଷ୍ଟେରି କରିଛି ବୋଲି । ଆମ ହାତରେ ଗୁବିକାଠି ନାହିଁ କି ଅର୍ଥ ନାହିଁ ।

ତୁମେ ସବୁ ଅନର୍ଥର କାରଣ । ମୁଁ କହିଲି ।

ବେଶ୍ ଉପଭୋଗ କରନ୍ତି ଅମୂଲ୍ୟ । ସେଦିନ ସେ ମୋତେ ଖୁବ୍ ସିରିଅସ୍ ହୋଇ କହିଲେ, ତୁମକୁ ଗୋଟେ କଥା ପଚାରିବି । ସତ କହିବ ?

ଏଯାଏ ଯାହା କହିଛି ସବୁ କଅଣ ମିଛ ? ପାଲଟା ପ୍ରଶ୍ନ କଲି ମୁଁ ।

—ନାହିଁ ଯେ, ତଥାପି କଅଣ ଯଦି ଭାବ ମନରେ .... ।

—ଭାବିବାର କିଛି ନାହିଁ, ପଚାର .... ।

—ଅଭିଷେକ ବାହା ହଉନି କାହିଁକି ?

—ତାକୁ ପଚାର ?

—ପଚାରିଥିଲି, ସେ ଉଡେଇଦେଲା ହସରେ ।

—ସେଇଟା ବୋଧହୁଏ ତାର ଟ୍ରେଡ୍ ସିକ୍ରେଟ ।

—କିନ୍ତୁ ଜାଣିବା ଦରକାର ।

—ସେ ବାହା ହଉନି ବୋଲି ତୁମର ମୁଣ୍ଡବ୍ୟଥା କାହିଁକି ?

—ତୁମେ ଅଛ ଯେ ..... । ହଠାତ୍ କହିପକେଇଲେ ଅମୂଲ୍ୟ । ମୁଁ ସ୍ତବ୍ଧ ହୋଇ ବସି ରହିଲ । ଭାଷା ସ୍ଫୁରିଲା ନାହିଁ ତୁଣ୍ଡରୁ । ନିର୍ବାକ ନିସ୍ତବ୍ଧ । ଅମୂଲ୍ୟ ମୋତେ ହଲେଇ ଦେଇ କହିଲେ, ପାଟିରୁ ବାହାରି ପଡିଲା ..... କିଛି ମନେକରିବ ନାହିଁ ।

ମୁଁ ନିଜକୁ ସଜାଡି ନବା ପାଇଁ ସମୟ ଖୋଜୁଥିଲି । ସେ କହିଲେ, ପାଟିରୁ ବାହାରି ପଡିଲା .... କିଛି ମନେକରିବ ନାହିଁ ।

ମୁଁ ଉତ୍ତର ଖୋଜୁଥିଲି । କଅଣ କହିବି ବୋଲି ନିଜକୁ ପ୍ରସ୍ତୁତ କରୁଥିଲି । କିନ୍ତୁ କିଛି କହିପାରିଲି ନାହିଁ । ଅମୂଲ୍ୟ ମୋର ମନର ଅବସ୍ଥାକୁ ଲକ୍ଷ୍ୟକରି କହିଲେ, ପରିହାସ କରୁଥିଲି .... ତୁମେ କଥାଟାକୁ ଇମିତି ସିରିଅସ୍ ଭାବେ ନେଲେ ଚଳିବ ?

ମୁଁ ଫେରିଯାଇଥିଲି ଅତୀତକୁ । ଅତୀତଟା ହଜି ଯାଇଥିଲା, ଭୁଲି ଯାଇଥିଲି ପଛରେ ଛାଡି ଆସିଥିବା ଆଉ ଗୋଟିଏ ସତ୍ୟ । ବିସ୍ମୟ ବିମୂଢ଼ ହୋଇ ଦେଖିଲି ସେଇ ସତ୍ୟ ଦୂର ନୁହେଁ, ଅତି ନିକଟରେ ..... ଠିକ୍ ଛାତି ତଳର ସ୍ପନ୍ଦନ ପରି ଟିକ୍ ଟିକ୍ କରେ ଅତୀତର ସବୁଜ ସ୍ମୃତି ..... ।

କଅଣ ସବୁ ଭାବୁଥିଲି କେଜାଣି ଅମୂଲ୍ୟ ମୋ ମନରେ ବିଶ୍ବାସ ଜନ୍ମାଇବା ପାଇଁ କହିଲେ, ଛାଡ, ସେ କଥା, ମୁଁ ଇମିତି ପଚାରୁଥିଲି ।

ଏତେବେଳକୁ ମୁଁ ଫେରିପାଇଥାଏ ନିଜକୁ । ତାଙ୍କୁ କହିଲି, ମଣିଷ ଥରେ ବାହାହୁଏ ..... । ପାଶ୍ଚାତ୍ୟ ଦେଶରେ ଡାଇଭୋର୍ସ ଏବଂ ପୁଣି ବିବାହ ହଉଥିଲେ ମଧ୍ୟ ପ୍ରଥମର ନୂତନତ୍ୱ ଦ୍ୱିତୀୟରେ ନଥାଏ । ତୁମର ଭୟ କରିବାର କୌଣସି କାରଣ ନାହିଁ ..... ।

ଅମୂଲ୍ୟଙ୍କ ମୁହଁରୁ କିନ୍ତୁ ସେ ନିର୍ଭୟ ବୋଲି ଜଣାପଡୁ ନଥିଲା । ପୁରୁଷମାନେ ଏହିପରି ; ନାରୀର କୁମାରୀତ୍ୱ ସେମାନେ କେବଳ ହରଣ କରନ୍ତି ନାହିଁ, ତାକୁ ସବୁଦିନ ପାଇଁ ଦାସୀ କରି ରଖିବାକୁ ଚାହାଁନ୍ତି । ସେମାନଙ୍କର ସଙ୍କୋଚନ ନାହିଁ, ସଂକ୍ରମଣ ଅବାଧ, ଏବଂ ନିଷିଦ୍ଧ ସୀମା ଅତିକ୍ରମ କରିବାର ଅଧିକାର ମଧ୍ୟ ଅଛି । କିନ୍ତୁ ନାରୀ ଯେପରି ପ୍ରଥମରୁ ଶୃଙ୍ଖଳିତ, କବଳିତ । ଏଥିପାଇଁ ବୋଧେ ତା'ଠାରେ ମୁକ୍ତିର ସ୍ୱାଦ ଚାଖିବା ପାଇଁ ବେଳେବେଳେ ଜାତହୁଏ ପ୍ରବଳ ଆକାଂକ୍ଷା । ଏଥିପାଇଁ ସେ ହୋଇ ଉଠେ ବିପ୍ଳବୀନି ।

ଅମୂଲ୍ୟଙ୍କୁ ଅଭିଷେକର ଚାହାଁ ନ ହବାର କାରଣଟା କିନ୍ତୁ ଆଉ କହି ପାରିଲି ନାହିଁ । ସବୁ କାରଣଗୁଡ଼ା ସବୁବେଳେ କହି ହୁଏନାହିଁ । ସେ ମଧ୍ୟ ସାହସ କରି ସେଇ ପ୍ରସଙ୍ଗ ଆଉଥରେ ଉଠାଇ ପାରିଲେ ନାହିଁ । ମୋତେ ଚାରିଦିଗରୁ ଆବୋରି ରଖିବା ପାଇଁ ସେଇଦିନୁ ତାଙ୍କର ପ୍ରବଳ ପ୍ରୟାସ ମୁଁ ଲକ୍ଷ୍ୟ କଲି । ସେ ସିନେମା ଦେଖା ପ୍ରାୟ ବନ୍ଦ କରିଦେଇ କହିଲେ, ଦେଖୁନ, କିମିତି କେଳେଙ୍କାରୀ ହଉଛି, ଦୁର୍ଘଟଣା ପ୍ରାୟ ଲାଗି ରହିଛି । ସିନେମା ହଲ୍‌ରେ ବସିବା ଅର୍ଥ ନିମନ୍ତ୍ରଣ କରି କହିବା, ଆ ବଳଦ ମୋତେ ବିନ୍ଧ୍ ।

ମୁଁ କହିଲି, ଏତେ ଶସ୍ତା ହୋଇନି ଯେ ବଳଦ ସାହସ କରିବ ବିନ୍ଧିବା ପାଇଁ, ତାର ସିଙ୍ଗ ଦୁଇଟାର ବଳ ମୋତେ ଜଣା ।

ଅମୂଲ୍ୟ ଖୁସି ହୋଇ କହିଲେ, ତଥାପି ସାବଧାନ ହବା ଭଲ । ପଅରଦିନ ରତିରେ କଅଣ ହେଲା ଶୁଣିନ ? କୃଷ୍ଣବାବୁଙ୍କ ସ୍ତ୍ରୀର ଜଙ୍ଘ ଉପରେ ଜଣେ ଚିପ ମାରିଦେଲା ସିନେମା ହଲ୍‌ରେ ..... ।

—ତୁମେକୁ କିଏ କହିଲା ?

—କୃଷ୍ଣବାବୁ ନିଜେ ।

—ତାଙ୍କୁ କିଏ କହିଲା ?

—ତାଙ୍କ ସ୍ତ୍ରୀ କହିଥିବେ ।

—ସେ କଅଣ କଲେ ସ୍ତ୍ରୀଙ୍କଠାରୁ ଶୁଣିବା ପରେ ?

—କାନମୁଣ୍ଡା ଆଉଁସି ରହିଲେ ।

— ଲଳିତା ନିଶ୍ଚୟ ସିନେମା ହଲ୍‌ରେ ଏକଥା କହି ନଥିବେ ।

—ଘରକୁ ଫେରି କହିଲେ ।

—ମୁଁ ଜାଣେ । ଟିପ ଯାହାକୁ ଭଲ ଲାଗେ ସେ ପରେ କୁହେ ..... ।

—ସେଠାରେ କହିଥିଲେ ହୁଏତ ଗୋଟେ ଗୋଳମାଳ ହୋଇଥାଆନ୍ତା । କୃଷ୍ଣବାବୁ ଦୁର୍ବଳ ପତଳା ଲୋକ । ଦୁର୍ବଳ ଜଣାପଡନ୍ତି, ରାଗିଯାଇ କିଛି କରିଥିଲେ ଅବସ୍ଥା ସମ୍ଭାଳି ପାରି ନଥାନ୍ତେ ।

— ବର୍ତ୍ତମାନ ଅବସ୍ଥା ସମ୍ଭାଳଂତୁ ।

—ଅସମ୍ଭାଳ ହବାର ଆଉ ଆଶଙ୍କା ନାହିଁ ।

—ତାଙ୍କ ସ୍ତ୍ରୀ କଥା ସିଏ ଜାଣନ୍ତିନି ।

—ଆଉ କିଏ ଜାଣେ ତାହେଲେ ?

—ଟିପ ମାରିଥିବା ଟୋକା ।

—ତୁମେ ସବୁ ଜାଣିବା ପରି କହୁଛ ।

—ତୁମ ପରି ବୋକା ନୁହେଁ, ଜାଣିବାର ବୟସ ଓ ଅଭିଜ୍ଞତା ମୋର ଅଛି ।

ଅମୂଲ୍ୟ ବିସ୍ମିତ ହୋଇ ଅନାଇଁ ରହିଲେ ମୋତେ ।

ତାଙ୍କର ପ୍ରତ୍ୟୟ ହଉ ନଥାଏ । ମୋ ମୁହଁକୁ ଚାହିଁ ରହିଁ ଥାଆନ୍ତି ତ ଆଣା ପରି ।

ଅଭିଷେକ ଆସି ପହଞ୍ଚିଗଲା ।

ଏଇ ତାକୁ ମୁଁ ପ୍ରଥମ ଦେଖିଲି ଧୋତୀ ପଞ୍ଜାବୀରେ । ପେଣ୍ଟ ସାର୍ଟ ପନ୍ଧବା ତାର ସଉକ । ସତରେ ପାଇଜାମା କୁର୍ତ୍ତା ଧୋତୀ ପଞ୍ଜାବୀ ପନ୍ଧ ଲୋକ କୁଆଡେ ନିରୀହ ହୋଇଯାଏ ବୋଲି ତାର ମତ । ସେଇ ମତର କେବେ ପରିବର୍ତ୍ତନ ହେଲା ତାହା ମୁଁ ଜାଣିନାହିଁ । ଧୋତୀ ପଞ୍ଜାବୀରେ ସେ ସତରେ ଅପୂର୍ବ ଦିଶୁଥିଲା । ମୁଁ ଲୋଭ ସମ୍ଭାଳି ନପାରି ଅନାଇ ରହିଲି ତାକୁ ।

ଅମୂଲ୍ୟ ବୋଧହୁଏ ମୋ ଦୃଷ୍ଟିରେ ପ୍ରଶଂସାର ତେଜ ଦେଖିପାରିଲେ । ସେ କହିଲେ, ବାଃ । ଚମତ୍କାର, ଧୋତୀ ପଞ୍ଜାବୀରେ ଆପଣ ଅନନ୍ୟ, ଏହାର ଉପମା ନାହିଁ ।

ଅଭିଷେକ କହିଲା, କାଲି କହିଥିଲି ଆସିବି ବୋଲି । ଚାଲିଆସିଲି ।

ମୋର କାହିଁକି ମନେହେଲା, ଅଭିଷେକର ଏଇ କୈଫିୟତ ଦବାର ଆବଶ୍ୟକତା ନଥିଲା । ସେ ଏଠାରେ ଥିବାଯାଏ ତାଙ୍କୁ ସବୁଦିନ ଆସିବା ପାଇଁ ନିମନ୍ତ୍ରଣ ଜଣାଇଥିଲେ ଅମୂଲ୍ୟ । ଅଭିଷେକର ବ୍ୟକ୍ତିତ୍ୱର ପରଶ ଲାଗିଥିଲା ତାଙ୍କ ମନରେ । ସେ ଏପରି ଜଣେ ବ୍ୟକ୍ତି ଯେ ଯୁଆଡେ ଯାଏ ତା ସହିତ ପ୍ରସାରିତ ହୋଇଯାଏ ତାର ପ୍ରସନ୍ନତା, ମଧୁର ବ୍ୟକ୍ତିତ୍ୱ । ଅମୂଲ୍ୟ ତା ସହିତ ସାଙ୍ଗ ହବା ପରେ ଅଫିସରୁ ଠିକ୍ ସମୟରେ ଫେରନ୍ତି,ଆଉ ବିଳମ୍ବ ହୁଏନାହିଁ । ଦିନେ ତାଙ୍କୁ ପରିହାସ କରି କହିଥିଲି, ଅଭିଷେକର ସେ ଷ୍ଟିଂ ଯଦି ଏଇ ଘରରେ ହୁଅନ୍ତା ମୋର ଲାଭ ହୁଅନ୍ତା ସବୁଠୁ ବେଶୀ । ତୁମେ ଘଣ୍ଟାର କଣ୍ଟା ଦେଖି ଠିକ୍ ସମୟରେ ଫେରିଆସନ୍ତ ଅଫିସରୁ, ଆଉ ଏତେ ବିଳମ୍ବ କରନ୍ତ ନାହିଁ ।

ଅମୂଲ୍ୟ କଥାଟାକୁ କିଂତୁ ସହଜ ଭାବରେ ନେଇ ନଥିଲେ । ତାଙ୍କୁ ବାଧିଥିଲା ବୋଧେ ।

ଆଜି କିଂତୁ ସେପରି କୌଣସି ପ୍ରସଙ୍ଗ ପଡିଲା ନାହିଁ । ଅଭିଷେକ ମୋତେ କହିଲା, ଅମୂଲ୍ୟବାବୁ ଚା ପିଇନାହାନ୍ତି ନିଶ୍ଚୟ । ଆହୁରି ଅଧଘଣ୍ଟାଏ ସମୟ ଅଛି ..... ।

ମୁଁ କହିଲି, ନା, ତାଙ୍କର ଚା ପିଇବା ସମୟଟା ବି ନିର୍ଦ୍ଦିଷ୍ଟ ହୋଇ ରହିଛି । ସେଇ ଛଅଟା । ମାତ୍ରେ ପାଞ୍ଚଟା ବାଜିଛି ଘଡିରେ । ମୁଁ ସବୁ ପ୍ରସ୍ତୁତ କଲାବେଳକୁ ଛଅଟା ହେ ଇଯାଇଥିବ ।

ଅମୂଲ୍ୟ ଖୁସି ହୋଇ କହିଲେ, ବେଶ୍ ଭଲ ପ୍ରତିଶ୍ରୁତି ଦେଲ । ଚା ସହିତ ଆଉକିଛି ବି ମିଳିବ

ଅଭିଷେକ କହିଲା, ଆଉ କଅଣ ମିଳିବାର ଆଶା କରଯାଇପାରେ ?

ମୁଁ କହିଲି, ସବୁ କଥା ଏଇନେ ନଶୁଣିଲେ ବି ଚଳିବ । କିଛି ଜାଣ, ଆଉ କିଛି ରହସ୍ୟ ହୋଇ ରହୁ କିଛି ସମୟ ।

ସେ ଦୁହିଁଙ୍କୁ ଗପିବାକୁ ଛାଡିଦେଇ ମୁଁ ଚାଲିଗଲି ଚା'ର ବ୍ୟବସ୍ଥା କରିବା ପାଇଁ । କାବୁଲି ବୁଟ ପାଣିରେ ପଡି ଫୁଲିଥିଲା ଠିକ୍ ମୋର ମନ ପରି । କାବୁଲି ବୁଟ ସିଝା ଅଭିଷେକର ଖୁବ୍ ପ୍ରିୟ । ବୁଟ ସିଝା, ପାଳଙ୍ଗ ସାଗର ପକୋଡି ନେଇ ମୁଁ ବାହିଦବାବେଳକୁ ଘଣ୍ଟାର କଣ୍ଟା ଛଅ ଉପରେ ।

ଅମୂଲ୍ୟ କହିଲେ, ହାଃ, ନିଶ୍ଚୟ ମୁଁ କହିବି ଯେ ତୁମର ମୋ ପ୍ରତି ଟିକେ ଅଧିକ ମମତା, ନୋହିଲେ ପାଳଙ୍ଗ ସାଗର ପକୋଡ଼ି ।

ମୁଁ କହିଲି, ତୋତେ ବି ବେଶ୍ ଭଲ ଲାଗିବ ଅଭିଷେକ । ତୁ ଖାଇ ଦେଖ୍ ..... ।

କିନ୍ତୁ ଅମୂଲ୍ୟଙ୍କୁ ପାଳଙ୍ଗ ସାଗର ପକୋଡ଼ି ଭଲ ଲାଗିବା ପରି ବୁଟ ପିଆଜ ଯେ ଅଭିଷେକର ଖୁବ୍ ପ୍ରିୟ ଏଇ କଥାଟାକୁ ଆଉ ବ୍ୟକ୍ତ କରିବାପାଇଁ ସାହସ ହେଲା ନାହିଁ । କାଳେ ଅଭିଷେକ ନିଜର ପ୍ରଗଳ୍ଭତାରୁ କିଛି କହି ପକେଇବ ସେଥିପ୍ରତି ସତର୍କ ରହି ମୁଁ କହିଲି, ବୁଟ ପିଆଜ ମୋର ପ୍ରିୟ ..... ମୁଁ ପିଲାଦିନେ ପାଗଳ ହଉଥିଲି ବୁଟ ପିଆଜ ଖାଇବା ପାଇଁ ।

ଅଭିଷେକ ବୁଝିଗଲା ବୋଧହୁଏ । ସେ ଅନ୍ୟପ୍ରସଙ୍ଗକୁ ଚାଲିଯାଇ କହିଲା, କାଲି ଯିବାଟା ପକ୍କା କରି ଆସିଲି .... ।

ଅମୂଲ୍ୟ କହିଲେ, ମୋ ସହିତ ବୋଧହୁଏ ତା ଆଗରୁ ଆଉ ଦେଖା ହବ ନାହିଁ । ମୁଁ ଗସ୍ତରେ ବାହାରିଯିବି, ଫେରିବି ଦୁଇଦିନ ପରେ ।

ଅଭିଷେକ କହିଲା, ଦୁଃଖ ରହିଗଲା ମନରେ । ଆପଣ କିନ୍ତୁ ସମ୍ବଲପୁର ଆସିଲେ ମୋ ପାଖରେ ରହିବେ । ଏଇ ଅନୁରୋଧଟାକୁ ଆଉଥରେ ପୁନରାବୃତ୍ତି କରୁଛି ।

ଅମୂଲ୍ୟ କହିଲେ, ଆଗାମୀ ଶୀତ ଋତୁରେ ଯିବାର ବାସନା ଅଛି । ହୀରାକୁଦ ଡ୍ୟାମରେ ବୁଲିବା ପାଇଁ ସବୁ ବ୍ୟବସ୍ଥା କରିବେ ଆପଣ ..... ।

ନିଶ୍ଚୟ, ନିଶ୍ଚୟ ।

ମୁଁ କହିଲି, ତୁମେ ଏକା ଯିବନି ନିଶ୍ଚୟ ।

ଅମୂଲ୍ୟ କହିଲେ, ଏକା ଏକା ଥରେ ଥରେ ଭଲଲାଗେ ଯେ ..... ।

ମୁଁ ଅଭିମାନ କଲା ଭଳି କହିଲି, ହଉ, ତୁମ ଇଚ୍ଛା ..... ।

ଅଭିଷେକ ମୋ ଆଡ଼େ ଚାହିଁ କହିଲା ଯେପରି, ତୋର ପଚାରିବାଟା ଠିକ୍ ହେଲା ନାହିଁ, ତୋତେ ଛାଡ଼ି ସେ କାହିଁ ଯାଆନ୍ତି ?

ଅମୂଲ୍ୟ ମୋତେ ଛାଡ଼ି ଏକା ଏକା କାହିଁ ଯେ ଯାଆନ୍ତି ନାହିଁ ଏହା ମୁଁ ଜାଣେ । କିନ୍ତୁ ମୋତେ କାହିଁକି ମନେ ହଉଥିଲା ଯେ ସେ ଏକା ଯିବାପାଇଁ ପ୍ଲାନ୍ କରିଛନ୍ତି ।

ଚା ପିଆ ଶେଷ ହବା ପରେ ଅଭିଷେକ କହିଲା, ଅର୍ଚ୍ଚନା ବହିର ପୋକ । ଏଠାରେ ଦେଖୁଛି ସେ ବହି ପଢ଼ିବା ଛାଡ଼ିଦେଇଛି । ବହି ପଢ଼ିବା ଠାରୁ ଆହୁରି ବେଶୀ କିଛି ମନୋରଞ୍ଜନ ପାଇଛି ବୋଧେ ।

ଅମୂଲ୍ୟ ହସିଉଠି କହିଲେ, ତାଙ୍କୁ ପଚାରନ୍ତୁ ।

ଅଭିଷେକ ମୋତେ କିଛି କହିବା ପୂର୍ବରୁ ମୁଁ ଚେଷ୍ଟା ଧରି ଉଠିଗଲି ।

ଅଭିଷେକ କାଲି ଚାଲିଯିବାର ଶୁଣିବା ପରେ ମୁଁ କହିଁକି କେଜାଣି ଆଉ ହାଲୁକା ଅନୁଭବ କରୁନଥିଲି । ମନଟା ଭରି ଭରି ଲାଗୁଥିଲା । ସତସ, ସତେଜ ମନଟା ହଠାତ୍ କାହିଁକି ଅନ୍ୟ ରକମର ହୋଇଗଲା ।

ଅଭିଷେକ ସହିତ ଦଶବର୍ଷ ପରେ ଦେଖା । ତା ଆଗରୁ ପ୍ରାୟ ପ୍ରତି-ଦିନ ଦେଖା ହଉଥିଲା । ଦିନେ ଦେଖା ନହେଲେ ସେ ରାଗିଯାଉ କହୁଥିଲା' ଏତେ ମଣିଷଙ୍କ ସହିତ ତୋର ଦେଖାହୁଏ, ମୁଁ ମଣିଷ ତାଲିକାରୁ ବାଦ୍ ପଡ଼ିନାହିଁ ନିଶ୍ଚୟ । ମୁଁ ସମୟ ନ ପାଇଲେ ସେ ଚାଲିଆସୁଥିଲା । ଆମଭିତରେ ଏଭଳି ଏକ ସହଜ ଆନ୍ତରିକତା ଗଢିଉଠିଥିଲା ଯେ ତାହା ସୂର୍ଯ୍ୟର ଆଲୋକ ପରି ନିର୍ମଳ, ପବନ ପରି ସତେଜ ।

ଅନେକ କଥାପରି ଅଭିଷେକର କଥା କେବଳ ସ୍ମୃତି ହୋଇ ରହି ଯାଇଥିଲା । ବୟସରେ ପ୍ରାୟ ସମାନ ଥିଲୁ ଆମେ । ସେଥିପାଇଁ ସେ ମୋତେ ଏବଂ ମୁଁ ତାକୁ 'ତୁ' ସମ୍ବୋଧନ କରୁଥିଲୁ । ଆଜି ବି ତାହା ଅକ୍ଷୁର୍ଣ୍ଣ ଅଛି । ଏଇଟା ବୋଧହୁଏ ସ୍ୱାଭାବିକ, ବରଂ ଅନ୍ୟକିଛି ଅସ୍ୱାଭାବିକ ଶୁଣାଯାଆନ୍ତା । ଅମୂଲ୍ୟ କିନ୍ତୁ ମୋତେ ବାହାଘରରୁ ଫେରି କହିଲେ, ତୁମେ ତାଙ୍କୁ ତୁ ତା କରୁଛ ..... ଭଲ ଶୁଭୁଛି କାନକୁ ।

ମୁଁ କିମିତି କହିଥାନ୍ତି ଯେ, କାନକୁ ଭଲ ନଶୁଭୁ ମନକୁ କିନ୍ତୁ ଭଲ ଲାଗୁଛି । ମନର କଥା ମନରେ ମାରି ମୁଁ ଶୋଇ ପଡ଼ିଥିଲି । ତା ଆରଦିନ ସକାଳେ ତାଙ୍କୁ କହିଥିଲି, ସେ ପିଲାଦିନର ସାଙ୍ଗ । ପାଞ୍ଚ ବର୍ଷ ବୟସରେ ଯେପରି ଡାକୁଥିଲି, ଆଜି ବି ସେପରି ଡାକୁଛି । ବୟସଟା ଯେଉଁ ପାଞ୍ଚବର୍ଷରୁ ଆଉ ବଢୁନାହିଁ ସେପରି । ଅମୂଲ୍ୟକୁ ଭଲ ଲାଗିଥିଲା ଉତ୍ତରଟା । କିନ୍ତୁ ସେ ଜାଣି ନଥିଲେ ଯେ ଏଇ ଉତ୍ତରଟା ଦବା ପାଇଁ ମୁଁ ସାରିରାତି ଶୋଇ ନ ଥିଲି ।

ଅଭିଷେକ ଚାଲିଯିବ, ତା ଆଗରୁ ଚାଲିଯିବେ ଅମୂଲ୍ୟ । ମୁଁ ଏକା ଏଠି ରହିବି ଘରେ । ରନୁ ଅପା ବି ନାହିଁ, ଗପ କରିବାକୁ ଆଉ କେହି ନାହିଁ ପାଖରେ । କଅଣ କରିବି କେଜାଣି । ମୁଁ ଫେରିବାବେଳକୁ ଅମୂଲ୍ୟଙ୍କ ପାଖରୁ ବିଦାୟ ନେଇ ଉଠୁଥାଏ ଅଭିଷେକ । ମୋତେ ଦେଖି କହିଲା, ଆଜି ଯାଉଛି ....

କାଲି ବ୍ୟସ୍ତ ରହିବି, ଆଉ ସମୟ ହବନି ଆସିବା ପାଇଁ । ବରଂ ତୁ ସଜ ସମୟ ପାଇ ବନ୍ଦୁବାବୁଙ୍କ ଘରକୁ ଚାଲିଆସିବୁ ..... ।

ଅମୂଲ୍ୟଙ୍କର ମୁହଁଟା ମାଡା ହୋଇଯିବାର ଲକ୍ଷ୍ୟକଲି ମୁଁ । ସେ କିନ୍ତୁ ମୋତେ ଉତ୍ସାହ ଦବା ପରି କହିଲେ, ହଁ ଯିବ ନିଶ୍ଚୟ । ମୁଁ ଥିଲେ ଯାଇଥାଆନ୍ତୁ ସାଙ୍ଗ ହୋଇ ..... । ତୁମେ ଏକା ଚାଲିଯିବ ।

ସେଦିନ ରାତିରେ କଅଣ ହେଲା କେଜାଣି ଆଗପରି ପାଖରେ ସବୁ ଉପାଦାନ ଥିବା ସତ୍ତ୍ୱେ ଅମୂଲ୍ୟଙ୍କ ପକ୍ଷରୁ କୌଣସି ଚେଷ୍ଟା ହେଲା ନାହିଁ । ମୁଁ ଅଯାଚିତ ହୋଇ ସଦାବେଳେ ଆଗୁଆ ନିଜକୁ ସମର୍ପି ଦିଅନ୍ତି କାହିଁକି ? ସେ କେତେବେଳେ ଶୋଇଲେ ମୁଁ କହିପାରିବି ନାହିଁ, କିନ୍ତୁ ମୋର ନିଦ ଭାଙ୍ଗିବା ବେଳକୁ ଭୋର ହୋଇଯାଇଥିଲା ।

ସେ ତରତର ହଉଥିଲେ ବାହାରିବା ପାଇଁ । ମୁଁ ଲାଗିଥିଲି କାମରେ । ସାତଟାବେଳେ ବ୍ରେକ୍‌ଫାଷ୍ଟ ଖାଇ ସେ ବାହାରିଗଲେ ଅଫିସ୍‌କୁ । ଯିବାବେଳେ କହିଲେ, ଅଭିଷେକବାବୁଙ୍କୁ ନମସ୍କାର ଜଣାଇଦେବ । ସେ ଆଉ ବାରିପଦା ଆସନ୍ତୁ ବା ନ ଆସନ୍ତୁ, ମୁଁ ସମ୍ବଲପୁର ଯିବି ନିଶ୍ଚୟ ।

'ମୁଁ'ଟା ଉପରେ ଯେପରି ଟିକେ ବେଶୀ ଯୋର୍‌ଦେଲେ ଅମୂଲ୍ୟ । 'ମୁଁ' ନ କହି ସେ 'ଆମେ' ଯିବା ବୋଲି କହିପାରିଥାଆନ୍ତେ । ମୁଁ ତ ତାଙ୍କଠାରୁ ଅଲଗା କରି ନିଜକୁ କେବେ ଦେଖିନାହିଁ । ମନଟା ବିଷର୍ଣ୍ଣ ହୋଇଗଲା । ମୁଁ ରାଗିଯାଇ କହିଦେଲି, ମୁଁ ବାର୍ଓ୍ୱ ଚାହକ ନୁହେଁ ଯେ ଜଣକର କଥା ଆଉ ଜଣକ ପାଖକୁ ନେଇଯିବି .... ।

ଅମୂଲ୍ୟଙ୍କ ହାତରେ ସମୟ ନ ଥିଲା । ସେ ବାହାରିଗଲେ ।

ଦଶଟା ପୁର୍ବ କାମ ଶେଷ କରି ମୁଁ ବାହାରିପଡ଼ିଲି ବନ୍ଦୁବାବୁଙ୍କ ଘର ଆଡ଼୍ ଟିକେ ବୁଲି ଆସିବା ପାଇଁ । ଟ୍ରେନ୍ ନାହିଁ ବାରିପଦାରୁ ସମ୍ବଲପୁରକୁ, ତେଣୁ ଷ୍ଟେସନକୁ ଯାଇ ସି ଅଫ୍ କରିବାର ଉପାୟ ନଥିଲା । ବସ୍‌ଷ୍ଟାଣ୍ଡକୁ କେହି ଯାଆନ୍ତିନି ସି ଅଫ୍ କରିବା ପାଇଁ । ଗୁଣ୍ଡାଏ ବଜାରୀ କେବଳ ଆଡ୍‌ଡା ଦିଅନ୍ତି ସେଠାରେ । ବନ୍ଦୁବାବୁଙ୍କ ଘର ସବୁଠୁ ଭଲ ଜାଗା । ବୁଲିଆସିବା ଆଉ ସି ଅଫ୍ କରିବା ଉଭୟ ହବ ।

ମୁଁ ରିକ୍‌ସାରୁ ଓହ୍ଲାଇ ଭିତରକୁ ଗଲି । ବନ୍ଦୁବାବୁ, ତାଙ୍କ ସ୍ତ୍ରୀ, ସାନ ପୁଅ ଅମରେଶ ସମସ୍ତେ ଯାଇଥିଲେ ବଜାରକୁ । ଘରେ ଏକା ଥିଲା ଅଭିଷେକ ।

ମୋ ପାଇଁ ସେପରି ସେ ଅପେକ୍ଷା କରୁଥିଲା । ମୋତେ ଦେଖି ଖୁସି ହୋଇ କହିଲା, ତୁ ଆସିବୁ ବୋଲି ମୁଁ ଜାଣିଥିଲି ।

ମୁଁ ତ ନୋଟିସ ନଦେଇ ଆସିଛି । କାଲି କିନ୍ତୁ ତୁ କହିଥିଲୁ ଆସିବା ପାଇଁ । ସେଟା ତ ଗୋଟାଏ ଫର୍ମାଲିଟି । କହିଲି ମୁଁ ।

ଅଭିଷେକ ଟିକେ ହସି କହିଲା, ଏପରି ନୋଟିସ ନଦେଇ ତୁ ଚାଲି ଯାଇଥିଲୁ, ମନେ ଅଛି ?

ମୁଁ ପ୍ରଗଲ୍ଭ ହୋଇ କେତେ କଅଣ କହିଥିଲି । ତଣ୍ଟାରେ ଆସି କେତେବେଳେ ତାରଟା ବାଜିଗଲା ଜାଣିପାରିଲି ନାହିଁ । ଅଭିଷେକ କହିଲା, ସେମାନଙ୍କ ଫେରିବାବେଳ ହୋଇଗଲା ।

ମୁଁ କଅଣ ସେମାନଙ୍କ ପାଖକୁ ଆସିଥିଲି ?

ସେ କହିଲା, ତୁ ନ ଆସିଥିଲେ ମୁଁ ଯାଇଥାଆନ୍ତି । ଆଉ ଆସିବୁନି, ଇମିତି ଇମିତି ଚାଲିଯିବୁ ..... ।

ଅଭିଷେକ ମୋ ଆଖିରେ କଅଣ ଦେଖିଲା କେଜାଣି କହିଲା, ତୁ ତ ଆଗେ ଏପରି ନଥିଲୁ ଅନେକ ବଦଳି ଯାଇଛୁରେ ଅର୍ଚ୍ଚନା ।

ମୁଁ ପ୍ରାୟ କାନ୍ଦିବା ସ୍ୱରରେ କହିଲି, ମୁଁ ବଦଳି ଯାଇନି ସେ ତୁ ବଦଳି ଯାଇଛୁ । ନହେଲେ ଖାଲି ଡାକ୍ତର ଫେରଇ ଦିଅନ୍ତୁ ମୋତେ .... ।

ସେ ନିଷ୍ପ୍ରଭ ଦୀପ ଶିଖା ପରି ସ୍ତବ୍ଧ ହୋଇଗଲା ଯେପରି ।

ଅଭିଷେକ ଆଉ କଅଣ କହିଥାଆନ୍ତା କେଜାଣି, କିନ୍ତୁ ମୁଁ କାନ୍ଦିବା ସ୍ୱରରେ କହି ପକେଇଲି, ତୁ ଏତେ ନିଷ୍ଠୁର, ଏତେ ନିର୍ଦ୍ଦୟ ।

ସେ ମୋତେ ସାନ୍ତ୍ୱନା ଦବା ପୂର୍ବରୁ ଚନୁବାବୁ ସ୍ତ୍ରୀ ଓ ପୁତ୍ର ସହ ଫେରିଆସିଲେ ଘରକୁ ।

—○—

• ହରିହର ମିଶ୍ର

ଦୁଇଟି କବିତା

# ୧–ଦିବାରାତ୍ରି ସେହି ଜ୍ୟୋତି
# ସେହି ଗତି
# ସେହି ଏକା ଯାତ୍ରୀ

ରାତି ପାହିଗଲେ ସବୁକଥା ଭୁଲିଯାଏ
ତମକୁ ସକାଳ ଖିଚି
ନୂଆ ନୂଆ ଧନ୍ଦାରେ ମନ ପଶିଯାଏ
ଏତେସବୁ ନିର୍ବାପିତ ଦୀପଶିଖା
ଖର ହୋଇ ଜଳେ କଣ ଦିନଯାକ
ରତିରେ ତା' ଲୟ ସବୁ ସ୍ୱପ୍ନମୟ ହୁଏ ।

ତମେ ହିଁ ବଞ୍ଚିଥିଲ ପ୍ରଭୁ ଜଗତରୁ ଗଣରେ
ଯେ କ୍ଷେତ୍ର ପାଖୋଇଗଲେ ସବୁବେଳେ ଲାଗେ
ତମେ ହିଁ ପାଖେଇଆସ ଘୂରି ଘୂରି
ସତେ ଅବା ନୀଳଚକ୍ର ଡାକି ଡାକି ଆସେ
ଚେତନମୟ ଦିଗନ୍ତର କୋଳାହଳ ସାଙ୍ଗେ
ଯାତ୍ରୀ ମିଶେ..ଯାତ୍ରୀ ମିଶେ..କେଉଁଭଳି କାହାର ଆଦେଶେ

ସବୁ ନେଇ ତମେ ବଢ଼ .... ତମ ସ୍ଥିତି ..... ତମର ଆକୃତି
ତଥାପି କାହିଁକି ତମେ ଶୂନ୍ୟ ହୁଅ .... ବ୍ୟର୍ଥ ହୁଏ
ପ୍ରୀତି ଓ ଆକୃତି

ନଥିବା ଲୋକର ଚିନ୍ତା ସୁଖ ନାହିଁ
ଥିବା ଲୋକ ଶାନ୍ତି ପାଏ ନାହିଁ
ପାଇଲେ ବଂଚିବା କଷ୍ଟ
ନ ପାଇଲେ ତୃପ୍ତି ହୁଏ ନାହିଁ ।

ଚିନ୍ତା ଲାଗି ତକାହକା ..... ସ୍ୱର ଶବ୍ଦ ..... ପାହାନ୍ତାରେ
ତମ ସଙ୍ଗେ ଇଚ୍ଛା ମୋର ଜଳୁଥାଉ ଅଖଣ୍ଡ ଜ୍ୟୋତିରେ
ମିଶିବାକୁ ଶକ୍ତିମୟ ଚେତନାର ଦିବ୍ୟ ସଂହତିରେ ।

•

## ୨—ପ୍ରଭୁ ତମେ ଶୂନ୍ୟ ହୋଇପାର ପ୍ରେମମୟ ପୂର୍ଣ୍ଣ ନିଃଶ୍ୱାସରେ

ତମେ ହିଁ ବଞ୍ଚିଥିଲ ..... ଆଉ ସବୁ ମରିଯାଉ
 କ୍ଷୀଣ ହୋଇଯାଉ

ସବୁରି କାମନା, ଇଚ୍ଛା ବିଶ୍ୱାସକୁ ନେଇ
ବିଚିତ୍ର ତମର ମତି
ପ୍ରଚଣ୍ଡ ସେ ଗତି ..... ।

ହେ ସମ୍ରାଟ, ସ୍ୱେଚ୍ଛାଚାରୀ ପ୍ରଭୁ
ନିଦ୍ରାଭଙ୍ଗ ସ୍ୱଇଚ୍ଛାରେ ଏହିଥର ହେଉ
ସ୍ୱପ୍ନରେ ପଡୁତ ପଡୁ
ତମର ମଙ୍ଗଳ କର୍ମ
ନିର୍ବିଘ୍ନରେ ଚାଲୁ ।

ଥରେ ହାତରୁ ଖସିଗଲେ ତମର
ଆଉ କରିବାର ନାହିଁ କିଛି କାହାର
ସେହି ପଥେ ଯାତ୍ରା ହେବ ଦୁର୍ନିବାର
ଶକ୍ତି ନାହିଁ କା'ର ରୋକିବାର

ହେ କୁଶଳୀ କାରିଗର ।
କେବଳ ଯାତ୍ରାପଥ ନିଷ୍କଳଙ୍କ କରିବାକୁ
ଆଜ୍ଞାଦିଅ ଶକ୍ତିକୁ ତମର
ବୁଝିବ ହୃଦୟ ଆମ
ନିଶ୍ଚିତ ହେଉ ସବୁ କାର୍ଯ୍ୟରେ ହାତର
ଗଢ଼ିବାକୁ ଶେଷ ଇଚ୍ଛା
 ଏହି ଥରଥର ।

( ଆକାଶବାଣୀ କଟକ କେନ୍ଦ୍ରରେ ପ୍ରଚାରିତ )

ମାର୍କଣ୍ଡେଶ୍ୱର ସାହୀ, ପୁରୀ

—୦—

• ଶ୍ରୀ ନେତ୍ରାନନ୍ଦ ସାମନ୍ତରାୟ

# ଓଡ଼ିଶା

ସେ ବୁଝିଛି ତୋ ମହାନ ଐତିହ୍ୟ ପରମ୍ପରା
ଅଛି ମଜ୍ଜାଗତ ତୋର ଭାଷା ସଂସ୍କୃତିକୁ ....
ବିଶ୍ୱାବସୁ ଶବର ଦେବତାଠାରୁ
ଇନ୍ଦ୍ରଦ୍ୟୁମ୍ନ ଦାସିଆ ବାଉରି ଯାଏଁ
କାଞ୍ଚି ଅଭିଯାନର ଦହିବିକା ମାଣିକକୁ, ଯବନ କବିକୁ
ଭୀମ ଭୋଇ ଜୟଦେବ ଦୀନକୃଷ୍ଣ
ଜଗନ୍ନାଥ, ଶାରଳା ଓ ଉପେନ୍ଦ୍ରଭଞ୍ଜଙ୍କୁ ।

ସେ ପଢ଼ିଛି ଶିଳାଲେଖ ଅବଲୁପ୍ତ ଇତିହାସ ଯେତେ
ଖଣ୍ଡଗିରି ଧଉଳୀର ପ୍ରସ୍ତର ଗୁମ୍ଫାରେ;
ସେ ଦେଖିଛି ତାପଙ୍ଗ ଦଳବେହେରା ରଘୁ ଦିବାକର
ଖୁର୍ଦ୍ଧା ଓ ରଣପୁର ଗଡ଼େ
ସ୍ୱାଧୀନତା ସ୍ୱାଦପାଇଁ ହସି ହସି ଝୁଲିଯାଏ
ଅତ୍ୟାଚାରୀ ଶାସକର ଫାଶୀଖୁଣ୍ଟ ପରେ,
ସମଗ୍ର ସତ୍ତାରେ ତାର ଖାଲି ତୋର ଚିନ୍ତା ଓ ଚେତନା
ଚଣ୍ଡାଶୋକ ଧର୍ମାଶୋକ ଯୁଦ୍ଧ ରକ୍ତପାତ ଭୁଲେ
ଯେଉଁ ମାଟି ପାଣି ପବନରେ .....
ତୋର ଆଉ କ'ଣ ଲୋଡ଼ା ଅଧିକ ଏ ବିଶ୍ୱ ଦରବାରରେ ??

ସେ ଶୁଣିଛି ବାରଶ ବଢ଼େଇଙ୍କର ସଂକଳ୍ପର ନିଷ୍ଠା
ଦିନ ଦଣ୍ଡ ବର୍ଷ ବର୍ଷ ଦୁଃଖ ସୁଖ ପ୍ରେମର କାହାଣୀ
ନିର୍ବାକ ନଟନଟୀ ଅଙ୍ଗରେ ଭଙ୍ଗୀରେ
ନିବିଡ଼ ଆଶ୍ଳେଷେ ଶୃଙ୍ଗାର ରତ ନିର୍ଜନ ଚନ୍ଦ୍ରଭାଗା କୂଳେ;
ସେ ଦେଖିଛି ଧର୍ମପଦ ଏବେ ବି ଜୀବନ୍ତ
ରକ୍ତ ମାଂସ ସ୍ପନ୍ଦନରେ ବାଲୁତ ସେ କାଳ କାଳ ପାଇଁ
କୋଟି କମନୀୟ କୋଣାର୍କ ଚୂଡ଼ାରେ,
ମଥା ଯହିଁ ନଇଁଯାଏ ନିଖିଳ ଏ ବିଶ୍ୱ ଜନମନ ମୋହି
ତୋ ଗୌରବ ଅକ୍ଷୟ କୀର୍ତ୍ତିରେ ।

ତୋ ଦୁଃଖ ହିଁ ଆଜି ତା'ର ଦୁଃଖ—
ନିସ୍ତେଜ ତୋ ମୁହଁଟିକୁ ଦେଖି ସବୁ ଯେ ଭୁଲିଛି
ସମସ୍ୟାର ରକ୍ତ ସିଂହାସନେ ବିଳାସକୁ ତୁଚ୍ଛ ସେ ମଣିଛି
ଶାନ୍ତିରେ ମୁହୂର୍ତ୍ତେ ବସିପାରେ ନାହିଁ,
ତୋ ଓଠରେ ହସଟିକେ ଦେଖିବାକୁ
ସକାଳରୁ ସଞ୍ଜଯାଏ ସେ ହୋ' କେତେ କ୍ଳାନ୍ତ ଶ୍ରାନ୍ତ
ସଂଗ୍ରାମୀ ମୁହୂର୍ତ୍ତେ ଥକି ପଡି ନାହିଁ;
ତୋ ପ୍ରାଣରେ ପ୍ରାଚୁର୍ଯ୍ୟର ସ୍ୱପ୍ନେର ଅସୀମ ତା ବ୍ୟାକୁଳତ
ସେ ଖୋଜୁଛି ବାସ୍ତବ ରୂପାୟନ
ଉଦ୍ଭାସିତ ସଂସ୍କୃତି କଳାରେ.....ଶିଳ୍ପରେ.....
ତୋ ପାଇଁ ଅଯାଚିତ ସମସ୍ତ ତା' ଶକ୍ତି ଓ ସାମର୍ଥ୍ୟ
ଥରଟିଏ ମନଭରି ଦେଖିବାକ
କଳ୍ପିତ ତା ନୂଆ କେଉଁ ମାନଚିତ୍ର ପରେ ।

କେତେ ଯୋଗ୍ୟ ସନ୍ତାନ ଯେ ଗଲେଣି ତୋ କୋଳୁ
କିଏ ସେ ବୁଝିଛି ତୋର ଆତ୍ମା .....
କନ୍ଧ କୋହ୍ଲ ସାନ୍ତାଳ ବସ୍ତିରୁ
ରାଜଧାନୀ ରାଜପଥ ବଡଦାଣ୍ଡ ଯାଏଁ
ତା ସ୍ୱପ୍ନ : ଶାନ୍ତି ମୈତ୍ରୀ ପ୍ରୀତିର ବନ୍ଧନ
ପ୍ରାଚୁର୍ଯ୍ୟର ଅପୂର୍ବ ଆନନ୍ଦ ଉଲ୍ଲାସ
ତୋ ଆଶୀର୍ବାଦରୁ ମାତ୍ର କଣିକାଏ
ତା ସ୍ୱପ୍ନ-ସୌରଭ ଆଶା ବିଶ୍ୱାସର ଅଗ୍ନେୟ ଶପଥ ।

କ୍ୱାର୍ଟର ନମ୍ବର—V/1
ୟୁନିଟ୍—୪, ଭୁବନେଶ୍ୱର

—୦—

• ଡକ୍ଟର ଗଗନେନ୍ଦ୍ର ନାଥ ଦାଶ

# ଜନଶ୍ରୁତି ଓ ଇତିହାସ : ପତିତପାବନ ଜଗନ୍ନାଥ

ଊନବିଂଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ ପୁରୀର କଲେକ୍ଟରଙ୍କ ନିକଟକୁ ଏକ ଦରଖାସ୍ତରେ ଖଣ୍ଡା ସୂର୍ଯ୍ୟମଣି ପାଟ ମହାଦେଈ ଲେଖିଥିଲେ,

"As a precedent, I take the liberty to bring to your notice that one of my ancestors named Raja Ramachandra Dev, who ascended the throne in 1660 Shakabda (1725 A. D.) having been compelled to be associated with a daughter of the then Mahammedan Noble was not allowed to perform he services of Jagannath or to enter the temple and the expressed his desire to worship the idol, the Pattitapaban Deb, a representative of Jagannath was set up at Singhaduar (the Lion Gate of the temple) in order that the fallen Raja might be able to see and worship it from outside." (ଦ୍ରଷ୍ଟବ୍ୟ, Mahanty, S., 1970, P. 327, 1973, Bhumika, P. 4)

ରାଣୀଙ୍କ ଓକିଲ ମଧୁବାବୁ (ଉତ୍କଳ ଗୌରବ ମଧୁସୂଦନ) ଏ ଦରଖାସ୍ତର ଚିଠା କରିଥିଲେ ବୋଲି ବିଶ୍ୱାସ କରାଯାଏ । ଦରଖାସ୍ତର ଉପରୋକ୍ତ ଉଦ୍ଧୃତାଂଶ ଭିତରେ ତିନୋଟି କଥା ଲୁଚିଯାଇଛି ।

(୧) ଖୋର୍ଦ୍ଧାର ରାଜା ଭୋଇ ଦ୍ୱିତୀୟ ରାମଚନ୍ଦ୍ର ଦେବ (୧୭୨୭ ୧୭୩୬) ମୁସଲମାନ ରମଣୀର ସଂଲଗ୍ନ କରି ହିନ୍ଦୁଧର୍ମଚ୍ୟୁତ ହୋଇଥିଲେ ଓ ଜଗନ୍ନାଥଙ୍କ ଦର୍ଶନ ଓ ସେବା ଅର୍ଚ୍ଚନା କରିବାର ଅଧିକାରରୁ ବଞ୍ଚିତ ହୋଇଥିଲେ । (ଦରଖାସ୍ତରେ ଦିଆଯାଇଥିବା ରାମଚନ୍ଦ୍ର ଦେବଙ୍କ କାଳ ଭ୍ରମାତ୍ମକ ।)

(୨) ଏହି ଶ୍ରେଣ୍ଣ ଦ୍ୱିତୀୟ ରାମଚନ୍ଦ୍ରଙ୍କ ସମୟରେ ଜଗନ୍ନାଥ ମନ୍ଦିରର ସିଂହଦ୍ୱାର ଗୁମଟରେ ପତିତପାବନ ମୂର୍ତ୍ତିର ପ୍ରତିଷ୍ଠା କରାଯାଇଥିଲା ।

(୩) ଏହି ପତିତପାବନ ମୂର୍ତ୍ତି ପ୍ରତିଷ୍ଠାର ଉଦ୍ଦେଶ୍ୟ ଥିଲା ହିନ୍ଦୁଧର୍ମରୁ ପତିତ ଦ୍ୱିତୀୟ ରାମଚନ୍ଦ୍ରଙ୍କୁ ଜଗନ୍ନାଥଙ୍କ ଦର୍ଶନ ଓ ସେବା ଅର୍ଚ୍ଚନା କରିବାର ସୁଯୋଗ ଦେବା ।

ପରବର୍ତ୍ତୀ କାଳରେ କୃପାସିନ୍ଧୁ ମିଶ୍ର, ଜଗବନ୍ଧୁ ସିଂହ, ଚକ୍ରଧର ମହାପାତ୍ର ଓ ସୁରେନ୍ଦ୍ର ମହାନ୍ତିଙ୍କ ଭଳି ଗବେଷକ ଓ ସର୍ଜନାତ୍ମକ ସାହିତ୍ୟ ସ୍ରଷ୍ଟା ଏହି ଦରଖାସ୍ତରେ ଉଲ୍ଲିଖିତ ତଥ୍ୟକୁ ସ୍ପଷ୍ଟଭାବରେ ବା ପ୍ରକାରାନ୍ତରରେ ଗ୍ରହଣ କରି ନେଇଛନ୍ତି । (ଦ୍ରଷ୍ଟବ୍ୟ Mishra, K. 1933, P. 250; Singh, J. 1964, p.386; Mahapatra, C. 1969, pp. 232-34, 242-43; Mahanty, S. 1968/73, 1970, pp. 305, 326-27).

ସୁରେନ୍ଦ୍ର ମହାନ୍ତିଙ୍କ ଯଥାକ୍ରମେ ୧୯୬୮ ଓ ୧୯୭୦ରେ ପ୍ରଥମ ଥର ପାଇଁ ପ୍ରକାଶ ପାଇଥିବା 'ନୀଳଶୈଳ' ଓ 'ଶତାବ୍ଦୀର ସୂର୍ଯ୍ୟ' ଉପନ୍ୟାସ ଦ୍ୱୟରେ ଖୋଦ୍ଧ ଦ୍ୱିତୀୟ ରାମଚନ୍ଦ୍ରଙ୍କ ଅମଳରେ ହିଁ ବଡ ଦେଉଳର ଗୁମଟରେ ପତିତପାବନ ମୂର୍ତ୍ତି ପ୍ରତିଷ୍ଠା ହୋଇଥିବା ଉଲ୍ଲିଖିତ । 'ନୀଳଶୈଳ' ଉପନ୍ୟାସରେ ଅନୁମାନ ଭିତ୍ତିରେ ଏହି ମୂର୍ତ୍ତି ପ୍ରତିଷ୍ଠା ପାଇଁ ଏକ ରାଜନୈତିକ କାରଣର ଉଲ୍ଲେଖ କରାଯାଇଥିବା ସ୍ଥଳେ 'ଶତାବ୍ଦୀର ସୂର୍ଯ୍ୟ'ରେ ଧର୍ମାନ୍ତରିତ ରାମଚନ୍ଦ୍ର ଦେବଙ୍କୁ ଦର୍ଶନ ଓ ସେବା ଅର୍ଚ୍ଚନାର ସୁଯୋଗ ଦେବା ଉଦ୍ଦେଶ୍ୟରେ ପତିତପାବନ ମୂର୍ତ୍ତି ପ୍ରତିଷ୍ଠା ହୋଇଥିଲା ବୋଲି କୁହାଯାଇଛି ।

ସୁରେନ୍ଦ୍ର ମହାନ୍ତିଙ୍କ 'ନୀଳଶୈଳ' ଓ 'ଶତାବ୍ଦୀର ସୂର୍ଯ୍ୟ' ଇତିହାସ ବା ଗବେଷଣାତ୍ମକ ଗ୍ରନ୍ଥ ନ ହୋଇ ଉପନ୍ୟାସ ହୋଇଥିଲେ ହେଁ— (ଓ ବୋଧହୁଏ ସେହି କାରଣରୁ)—ଏ ଦରଖାସ୍ତ ପରିବେଷିତ ତଥ୍ୟ ବର୍ତ୍ତମାନ ଜନପ୍ରିୟ ଜନଶ୍ରୁତିର ବିଷୟବସ୍ତୁ ହେବାରେ ଏ ପୁସ୍ତକ ଦ୍ୱୟର ଅବଦାନ ସବୁଠାରୁ ଅଧିକ ।

ବର୍ତ୍ତମାନ ଦେଖାଯାଉ ଏ ତଥ୍ୟର ମୂଳ କେଉଁଠାରେ ? ଖୋର୍ଦ୍ଧାର ରାଜା ଖୋଦ୍ଧ ଦ୍ୱିତୀୟ ରାମଚନ୍ଦ୍ର ଏକ ମୁସଲମାନ ରମଣୀର ପ୍ରଣୟ ପାଶରେ ଆବଦ୍ଧ ହୋଇଥିଲେ ଓ ମୁସଲମାନ ଧର୍ମ ଗ୍ରହଣ କରିଥିଲେ ବୋଲି ଜନଶ୍ରୁତି

ଏବେ ବି ରହିଛି; ମଧ୍ୟ ଯୁଗରେ ମଧ୍ୟ ଥିଲା । 'ମାଦଳା ପାଞ୍ଜି'(ମାଦଳାପାଞ୍ଜି, ୧୯୪୦, ପୃ ୭୭-୭୮) ଓ 'ବାଳିଗାଁ' ଦାସିଆ ଭାଗବତ (Mishra, N. 1978, P. 73) ପରି ମଧ୍ୟଯୁଗୀୟ ସଙ୍କଳନ ଓ ରଚନାରେ ଏହାର ଉଲ୍ଲେଖ ରହିଛି । ଏହା ବ୍ୟତୀତ ଦୁଇଟି ପୁରୁଣା ରେଖାଚିତ୍ର ଓ ତାର ନିମ୍ନରେ ଥିବା ସୂଚନାକୁ ମଧ୍ୟ ଏହାର ପ୍ରମାଣ ରୂପେ ଉପସ୍ଥାପନ କରଯାଏ । (ଦ୍ରଷ୍ଟବ୍ୟ, Mahapatra, C. 1969,ଚିତ୍ର ନମ୍ବର ୧୧ ଓ ୧୪ ।) ଅବଶ୍ୟ ତା ସତ୍ତ୍ୱେ କେତେକ ଐତିହାସିକ ଏହା ସ୍ୱୀକାର କରିବା ପାଇଁ କୁଣ୍ଠା ପ୍ରକାଶ କରିଛନ୍ତି (ଦ୍ରଷ୍ଟବ୍ୟ Mahapatra, K., 1969, P. 118) ।

କିନ୍ତୁ ଖୋଇ ଦ୍ୱିତୀୟ ରାମଚନ୍ଦ୍ରଙ୍କ ସମୟରେ ପତିତପାବନ ମୂର୍ତ୍ତିର ପ୍ରତିଷ୍ଠା ହୋଇଥିଲା ବୋଲି କୌଣସି ପ୍ରମାଣ ନାହିଁ । ମଧ୍ୟ ଯୁଗରେ ଏପରି ଜନଶ୍ରୁତି ଥିବାର ସୂଚନା କୌଣସି ସୂତ୍ରରୁ ମିଳେ ନାହିଁ । ପ୍ରକାଶ ପାଇଥିବା 'ମାଦଳା ପାଞ୍ଜି' ବା 'ବାଳିଗାଁ ଦାସିଆ ଭାଗବତ'ରେ ମଧ୍ୟ ଏହାର ଉଲ୍ଲେଖ ନାହିଁ । ପୁନଶ୍ଚ ହିନ୍ଦୁ ଧର୍ମରୁ ପତିତ ଦ୍ୱିତୀୟ ରାମଚନ୍ଦ୍ରଙ୍କ ଦର୍ଶନ ଓ ସେବା ଅର୍ଚ୍ଚନା ପାଇଁ ଏ ମୂର୍ତ୍ତିର ପ୍ରତିଷ୍ଠା ହୋଇଥିଲେ ଦ୍ୱିତୀୟ ରାମଚନ୍ଦ୍ରଙ୍କ ମୃତ୍ୟୁ ପରେ ଏ ମୂର୍ତ୍ତିର ବିସର୍ଜନ ମଧ୍ୟ ହୋଇପାରିଥାଆନ୍ତା । କିନ୍ତୁ ଏହା ବର୍ତ୍ତମାନ ପର୍ଯ୍ୟନ୍ତ ବିଦ୍ୟମାନ । ଏଥିରୁ ଅନୁମିତ ହୁଏ ଏହା ଦ୍ୱିତୀୟ ରାମଚନ୍ଦ୍ରଙ୍କ ଦର୍ଶନ ଓ ସେବା ଅର୍ଚ୍ଚନା ପାଇଁ ପ୍ରତିଷ୍ଠିତ ହେବାର ଯେଉଁ କାରଣ ଦର୍ଶାଯାଇଛି ତାହାର ଐତିହାସିକ ଭିତ୍ତି ନଥିଲା । ବୋଧହୁଏ ଏଥିପାଇଁ ପ୍ରଭାତ ମୁଖାର୍ଜୀ କହନ୍ତି, "It appears that the Patita Pabana image was set up for Darshan by the low caste people, who were not allowed to enter the Temple. (Mukherjee, P., 1977, P. 378, f. n.)

କେବଳ ସେତିକି ନୁହେଁ ଦିବାକର ଦାସଙ୍କ 'ଜଗନ୍ନାଥ ଚରିତାମୃତ' (ବା ଜଗନ୍ନାଥାମୃତ)ର ବିଂଶ ଅଧ୍ୟାୟରେ ଅଛି—

"ଆଦ୍ୟେଣ ସିଂହଦ୍ୱାର ସ୍ଥାନ
ପତିତପାବନ ଦର୍ଶନ ।"

ଏ ମଧ୍ୟରେ ପୂର୍ବୋକ୍ତ ପତିତପାବନ ମୂର୍ତ୍ତିର ସୂଚନା ମିଳେ । "ଜଗନ୍ନାଥ ଚରିତାମୃତ' ରଚନାର ସମୟ ସପ୍ତଦଶ ଶତକର ତୃତୀୟ ଦଶକ

ବା ମଧ୍ୟଯୁଗ ବୋଲି ସ୍ଥିର କରାଯାଇଅଛି (Mahapatra, K., 1969, P. 88; Das, S., 1963, P. 635)। ଏଥିରୁ ଅନ୍ତତଃ ଏତିକି ଜଣାଯାଏ ଦ୍ୱିତୀୟ ରାମଚନ୍ଦ୍ରଙ୍କ ପ୍ରାୟ ଶହେ ବର୍ଷ ପୂର୍ବରୁ ଜଗନ୍ନାଥ ମନ୍ଦିରର ଗୁମଟରେ ପତିତପାବନ ବିରାଜିତ ଥିଲେ। ତେଣୁ ଦ୍ୱିତୀୟ ରାମଚନ୍ଦ୍ରଙ୍କ ସମୟରେ ଏହି ମୂର୍ତ୍ତି ପ୍ରତିଷ୍ଠିତ ହୋଇଥିବାର ପ୍ରଶ୍ନ ଉଠେନାହିଁ ଓ ମଧ୍ୟଯୁଗରେ ଏପରି ଜନଶ୍ରୁତି ପ୍ରଚଳିତ ଥିବାର ସମ୍ଭାବନା ମଧ୍ୟ ଅନ୍ତୁରି ହ୍ରାସ ପାଏ। ବୋଧହୁଏ ରାଣୀ ସୂର୍ଯ୍ୟମଣିଙ୍କ ଦରଖାସ୍ତକୁ ଅବଲମ୍ବନ କରି ମାତ୍ର ଊନବିଂଶ ଶତାବ୍ଦୀରେ ଏ ଜନଶ୍ରୁତିର ଉଦ୍ଭବ ହୋଇଛି।

ତେବେ ବର୍ତ୍ତମାନ ପ୍ରଶ୍ନ ହେଉଛି ଯେଉଁ ଦ୍ୱିତୀୟ ରାମଚନ୍ଦ୍ର ଦେବଙ୍କ ସମୟରେ ପୁରୀ ବଡ଼ ଦେଉଳର ଗୁମଟରେ ପତିତପାବନ ମୂର୍ତ୍ତିର ପ୍ରତିଷ୍ଠା ହୋଇଥିଲା ବୋଲି ରାଣୀ ସୂର୍ଯ୍ୟମଣିଙ୍କ ଦରଖାସ୍ତରେ କିପରି ଓ କାହିଁକି କୁହା ଯାଇଥିଲା ? ଏଠାରେ କେବଳ ଏତିକି ମାତ୍ର ଅନୁମାନ କରାଯାଇପାରେ ଯେ ଯେତେଦୂର ସମ୍ଭବ ସଚେତନ ଭାବରେ ଏପରି ଭ୍ରମାତ୍ମକ ତଥ୍ୟର ପରିବେଷଣ କରାଯାଇଥିଲା ଓ ରାଣୀ ସୂର୍ଯ୍ୟମଣିଙ୍କ ସ୍ୱାର୍ଥରକ୍ଷା ବା ସ୍ୱାର୍ଥସାଧନ ଉଦ୍ଦେଶ୍ୟରେ ଏହା କରା ଯାଇଥିଲା। କିନ୍ତୁ ଏହାପରେ ପୁଣି ପ୍ରଶ୍ନ ଉଠିବ ଏଥିରେ ରାଣୀ ସୂର୍ଯ୍ୟମଣିଙ୍କ ସ୍ୱାର୍ଥ କଅଣ ଥିଲା ? ପୁଣି ଏଇ ସ୍ୱାର୍ଥ ରକ୍ଷା/ସାଧନ ଏପରି ଭ୍ରମାତ୍ମକ ତଥ୍ୟ ପରିବେଷଣ ଦ୍ୱାରା କିପରି ରକ୍ଷିତ ହୋଇଥିଲା ବା ଥାଆନ୍ତା ? ପୁଣି ଏଥିପାଇଁ କିଏ ଦାୟୀ– ରାଣୀ ସୂର୍ଯ୍ୟମଣି, ମଧୁବାବୁ ବା ଅନ୍ୟକେହି ? ଏ ସମସ୍ତ ପ୍ରଶ୍ନର ସଠିକ ଓ ସମ୍ପୂର୍ଣ୍ଣ ଉତ୍ତର ଦେବା ବର୍ତ୍ତମାନ ହୁଏତ ସମ୍ଭବ ନୁହେଁ। କିନ୍ତୁ ରାଣୀ ସୂର୍ଯ୍ୟମଣି କେଉଁ ପୃଷ୍ଠଭୂମିରେ ଓ କାହିଁକି ଏ ଦରଖାସ୍ତ ଲେଖିଥିଲେ ତା ଜାଣିପାରିଲେ ଏ ପ୍ରଶ୍ନ ମଧ୍ୟରୁ କେତେକ ପ୍ରଶ୍ନର ଉତ୍ତର ପାଇବା ସହଜ ହେବ ଓ ସଚେତନ ଭାବରେ ରାଣୀଙ୍କ ସ୍ୱାର୍ଥରକ୍ଷା/ସାଧନ ପାଇଁ ଏପରି ଭ୍ରମାତ୍ମକ ତଥ୍ୟର ପରିବେଷଣ କରାଯାଇଥିଲା ଏହି ଅନୁମାନ ଠିକ୍ ବା ଭୁଲ ତା ଜଣାପଡ଼ିବ। ପୁଣି ଏହି ଅନୁମାନ ଠିକ୍ ବୋଲି ପ୍ରମାଣିତ ହେଲେ ନିର୍ଦ୍ଦିଷ୍ଟ ଉଦ୍ଦେଶ୍ୟ ନେଇ କିପରି ସଚେତନ ଭାବରେ ଜନଶ୍ରୁତି ସୃଷ୍ଟି କରାଯାଏ ଏହା ହେବ ତାର ପ୍ରକୃଷ୍ଟ ଉଦାହରଣ।

## ଉପାଦାନ ପଞ୍ଜିକା

### (କ)

୧ । ଜଗନ୍ନାଥ ଚରିତାମୃତ—ଦିବାକର ଦାସ
୨ । ମାଦଳା ପାଞ୍ଜି (୧୯୪୦)—ସଂ. ଆର୍ତ୍ତବଲ୍ଲଭ ମହାନ୍ତି

### (ଖ)

୧ । ଦାସ, ସର୍ବେଶ୍ୱର (୧୯୭୩)—ଭକ୍ତକବି ଜଗନ୍ନାଥ ଦାସଙ୍କ ଜୀବନ ଚରିତର ଉପାଦାନ, ଝଙ୍କାର, ୧୫/୬
୨ । ମହାନ୍ତି, ସୁରେନ୍ଦ୍ର (୧୯୬୮/୧୯୭୩)—ନୀଳଶୈଳ
୩ । ମହାନ୍ତି, ସୁରେନ୍ଦ୍ର (୧୯୭୦)—ଶତାବ୍ଦୀର ସୂର୍ଯ୍ୟ
୪ । ମହାପାତ୍ର, ଚକ୍ରଧର (୧୯୬୯)—ଉତ୍କଳ ଇତିହାସର ଏକ ଅଜ୍ଞାତ ଅଧ୍ୟାୟ
୫ । ମହାପାତ୍ର, ଚକ୍ରଧର (୧୯୬୯)—ଖୁର୍ଦ୍ଧା ଇତିହାସ
୬ । ମିଶ୍ର, କୃପାସିନ୍ଧୁ (୧୯୨୭/୧୯୩୩)—ଉତ୍କଳ ଇତିହାସ
୭ । ମିଶ୍ର, ନୀଳମଣି (୧୯୭୮)—ଭକ୍ତ ବାଲିଗାଁ ଦାସ (ଜୀବନୀ ଓ ରଚନା)
୮ । Mukherjee, Prabhat (1977)—History of Jagannath Temple in 19th Century
ସିଂହ, ଜଗବନ୍ଧୁ (୧୯୨୯/୧୯୬୪)—ପ୍ରାଚୀନ ଉତ୍କଳ

—○—

ସୁଧୀର ପଟ୍ଟନାୟକ

# କୋଦଣ୍ଡ ମୁକୁଟ

କୋଦଣ୍ଡ ମୁକୁଟ କଳେବଳେ ଝାଂପିନେଲ୍ ପରେ
ଏବେ ତୋ ତୋ ପାଞ୍ଚ କଳ୍ପନା ଜଳ୍ପନା
ଚାଲିଅଛି ଚମତ୍କାର ଧରାଧରି ଯାହିତ୍ୟ ସାଧନା
ଧ୍ୟାନ ଧାରଣା ମାନସିକ ଯେତେ ସୁମରଣା
ନୀତି ନିୟମ ବହିର୍ଭୂତ ଚିନ୍ତାରେ ସତି ପାହିଯାଏ
ଚେତନାରେ ଭୀମକାନ୍ତ ଭୂତ ମନ ମୋହିନୀ ଏ
ସର୍ବାଙ୍ଗରେ ଶିହରଣ ସୃଷ୍ଟିକରି କଣ୍ଠରୁଦ୍ଧ କରେ
ଛଳନାର ମୁଖା ପିନ୍ଧି ପ୍ରତିଜ୍ଞାରୁ ଟଳମଳ ମାନୀ ଦୁର୍ଯୋଧନ
କାହାର ବହପ କେତେ ଯେ
ଖଣ୍ଡି ଦେଇ କଂସା କବାଟ ଖୋଲି ଦେବ ଅମୁହାଁ ମନ୍ଦିର ।

ଚାଲିଅଛି ହୋ ହଲ୍ଲା କୋଳାହଳ ଉତ୍ତେଜନା
ସଂକୀର୍ଣ୍ଣତା ଲୁଟିନିଏ ସ୍ନେହ ଶ୍ରଦ୍ଧା ପ୍ରେମ ପ୍ରୀତି
ଆଖି ଆଢୁଆଳରେ ଡିଅନିଆ କେତେ ନୂଆ ଭେଟି
ସୃଜନୀର ହଜିଯାଏ ଜ୍ଞାନ ଗରିମା
ଯେତେ ବୁଦ୍ଧି ବିବେକ ମତି ଗତି ଓ ପ୍ରକୃତି ।

ଶାନ୍ତି କାମୀ ସମ୍ରାଟ ଏବେ ମସଗୁଲ ସିଂହାସନ ପରେ
ଶକୁନୀର ବିଚକ୍ଷଣ ଶାସ୍ତ୍ରୀୟ ବିଦ୍ୟାରେ
ଦରବାର କୁହେଳିକାଚ୍ଛନ୍ନ
ଭ୍ରୂକୁଂଚନରେ ମନ୍ତ୍ରଣାର ସୀମା ସରହଦ ଡେଇଁ
ଅପେକ୍ଷାରେ ଛଦ୍ମବେଶୀ
ପଣ୍ୟବାହି ଯାନ ପରି ଉବୁଟୁବୁ
ଅଥଳ ଜଳଧିର ଭଉଁରୀରେ
ସ୍ୱାର୍ଥ ହିଁ ଏକମାତ୍ର ନୀତିଶ୍ଳୋକ, ଦୁର୍ଲ୍ଲଭ ସମ୍ପତ୍ତି
ନାହିଁ ନଥିବା ଗୁଣ କୀର୍ତ୍ତନ ବେସରମା ଭଟଙ୍କ କଣ୍ଠରେ ।

ଯୁଦ୍ଧ ପ୍ରାୟ ଅବଶ୍ୟମ୍ଭାବି ।
ଶିବିରରେ ଆଲୋଡ଼ନ, ଆଲୋଚନା ପର୍ଯ୍ୟାଲୋଚନା
ଧୃତ ବାଞ୍ଛିତର ବ୍ୟସ୍ତ ଶର ସନ୍ଧାନରେ
କଳ୍ପିତ ଯୌଧ ତଳେ ସନ୍ଦେହ ସଂଦିହାନର
ଶୁକ୍ରତାରା ଆଖିମାରେ
କିପରି ମିଶିବ ଅଗ୍ନି ତ୍ରିବେଣୀ ତୀର୍ଥରେ
ପଞ୍ଜିକାର ଲଗ୍ନବେଳା ପରଖୁଛି ରକ୍ତଦରବାରରେ ।

ଦର୍ଶକର ଆଉ ବା ଦୁଃଖ କଣ ?
ସେତ ବସିଛି ଆରାମ ଚୌକିରେ
ସଂସାର ଖସିଗଲେ ଆକାଶ ଛିଡ଼ିପଡ଼ିଲେ ପଡୁ
ତାର ବା ଯାଏ ଆସେ କେତେ ..... .....
ସେ ବସିଛି ତ ବସିଛି ଯୁଗଯୁଗର ମୂକ ସାକ୍ଷୀ ହୋଇ
ଐତିହାସିକ କିମ୍ବଦନ୍ତୀ ପରି ମୁଖଶାଳାର ମଣ୍ଡପରେ
ସଜୀବ ନିର୍ଜୀବ କାଷ୍ଠ ପାଷାଣରେ,
ଦେଖୁଛ ତ ଦେଖୁଥାଅ
ବିପ୍ଳବକ, ବୁଦ୍ଧିଜିବୀ, ଉତ୍ତର ଦାୟଦ ଯେତେ
କ୍ଷୁଦ୍ରତା ଗ୍ରାସକରେ ନିଜସ୍ୱକୁ
କିପରି କେଉଁ ପରକାରେ ଅବା କେଉଁମତେ ।

—o- -

ସମବାୟ ବିଭାଗ
ରାଜ୍ୟ ସଚିବାଳୟ, ଭୁବନେଶ୍ୱର

• ବି. ଏନ୍. ଶ୍ରୀକାନ୍ତ ପଟ୍ଟନାୟକ

# କେହି ଯେମିତି ନ ଜାଣଂତୁ

ଯାହା ଚେହେରା ହୋଇଥିଲା, ତାକୁ ଆଉ ଚିହ୍ନି ହେଉନାହିଁ । ବାଳ ଫୁରୁ ଫୁରୁ, ସିଝିଲା ସିଝିଲା ଆଖି । "ଷଜେନ୍ କୁଆଡେ ?" ମୁଁ ପଚାରିଲି ।

"କେମତି ଅଛୁ ଶଳା ?"

"ଭଲଅଛି । ବସିଯା । ଚା' ?"

"ନାଇଁରେ । ମଦ ପିଇବି ।"

"ମଦ ?"

"ମଦ ପିଇବି, ଷଉଳି; ଅଛି ?"

"ଷଜନ୍ ଦୋସ୍ତ, ତୁ କେଇମିତି ପିଇଷ୍ଣୁଳିଚୁ ?"

"ଯାରେଃ, ଗୁଡ଼ାଏ ବକ୍ ବକ୍ କରନା । ମାଲ୍ ନାହିଁ ତ ଚାଲ୍ ।"

"ରହରେ, କୁଆଡେ ପଳେଇ ଯାଉଛି କି ? ବସ୍ ଦିକଥା ପଡୁ ।

"ତାହେ ବକ୍ ବକ୍ କରନା ଶଳା ଉଠ୍ ।

"ଉଁ, ମୁଁ ଟିକେ ପୋଷାକ ପିନ୍ଧି ନିଏ ।"

"ଯୋଉ ତ ଚେହେରା ଶଳା, କୃଷ୍ଣ ସାଜିବ ! ଜଲ୍ଦି କର୍ !"

"ଏଇ ଆଇଲି ବୋଲି ।"

"ଶଳା ଆଉ କୁଆଡେ ଯିବା ଦର୍କାର କଣ ? ମାଇକିନା କିବେ ? ଏଇଠି ପୋଷାକ ପିନ୍ଧ୍ ।"

ଆଉ ତର ସହିଲାନି ।

ସେଲୁଛା! ଅଟୋମୋବାଇଲ୍ସ ପଛପଟେ ଷଉଳି ମଦର କାରବାର । ବେଶ୍ ଭଲ ବନ୍ଦୋବସ୍ତ । ଅଳ୍ପ ଅନ୍ଧାର ଅନ୍ଧାର ଜାଗା । ସେପଟରୁ ବଜାରର ଦିଟାଗୋଟା ପେଟ୍ରୋମାକ୍ସ ଆଲୁଅରୁ ମେଣ୍ଟାଏ ଦିଶିଯାଏ । ରାସ୍ତା ସେପାଖର ସିନେମା ଘର ଉପରୁ ବଖତ ଉପରେ ପହଞ୍ଚି ପାରିଲେ ବଢ଼ିଆ ଖାନା ବି ଆସେ ! ଦିଟା ମଜ୍‌ବୁତ୍ ଢୋଡ଼ିଆ, ଆଉ କିରସିନା ପଟାର ଟେବୁଲ ଉପରେ କି ସୁନ୍ଦର ପାଲିସ ପ୍ଲାଷ୍ଟିକ୍ ଚଦର ।

"ବୁଝିଲୁ ଦୋସ୍ତ—ଏଇଟା ସେଇ ଉର୍ବଶୀ ପୁରୁରବାଙ୍କ ପରି ।"

"କଣ କହିଲୁ ?"

"ରହ୍ଃ । ଶଳା ପଠାଣ ତୁ କୁଆଡୁ ଏସବୁ ବୁଝିବୁ ? ମା ଭାରତ୍ ବୁଝିଲୁ ? ମା ଭାରତ । ସଭାଟାଏ ନୂର୍ ପରୀଟିକି ପାଇଥିଲା । ବୁଝିଲୁ, ରଜା ନାଁ ପୁରୁରବା, ନୂର୍‌ପରୀ ନାଁ ଉର୍ବଶୀ । ବ୍ୟାପ ସବୁହେବ । କିନ୍ତୁ ଅନ୍ଧାରରେ ନୂର୍‌ପରୀର ଝିଅ ଯେମିତି ଦୃଶ୍ୟ ନ ହୁଏ । ରଜା ଦେଖିଲେଇ କାମ ଖତମ । ଭାଇଁଲୁ ମିଆଁ, ସେକୁଡା ସର୍ଦ୍ଦାରଜୀ ଶଳାର ସେଇମିତି । ହକ ପଇସା ଦିଅ, କିନ୍ତୁ ଦେଖିପାରିବନି କିଛି । ସବୁ ଅନ୍ଧାର ସବୁ ବିଶ୍ୱାସରେ ।"

ସେ କଣ କହୁଥିଲା ଅବଶ୍ୟ ସେତେବେଳେ କିଛି ବୁଝାପାଉ ନଥିଲା । କିନ୍ତୁ ପରେ ସବୁ ବୁଝିପାରିଲି । ମୁଁ ପଚାରିଲି, "ଗଜେନ୍ ତୁ କଣ ପାଇଁ ମଦ ପିଉ ?"

"ଶଳା ହଜାରଥର ଖାଲି ସେଇକଥା । କଣ ପାଇଁ କଣ ବେ ? ପିଇବା ପାଇଁ ପିଏ ।"

"ଜାଣିଚୁ ଗଜେନ୍ ? ପିଇବାର କେତେ କାରଣ ଥାଏ । କିଏ କୋଉ ଲଡ଼କୀ ଉପରେ ଫିଦା, ଲଡ଼କୀ ଔର୍ କିସି ସେ ପ୍ୟାର କରତିହେ ।

"ମିଆଁ, ଛାଡ଼୍ ୟାର । ଲଡ଼କୀ ଚଡ଼କୀ ମୁଝେ ବିଲ୍‌କୁଲ୍ ପସନ୍ଦ ନହିଁ ହେ । ମାଲ୍‌ପିଲାଓ ଦୋସ୍ତ, ଗ୍ରଟ୍ ଖିଲାଓ । ସର୍ଦ୍ଦାରଜୀ, ତୋ ପାଲେଟ କଲିଜିଭଜା' ଭେଜୋ, ଚଚ୍ଚେମିଆଁ, ତୋର ସେତେ ପଇସା ସବୁ ହିସାବ ରଖ୍, ହମ୍ ସବ୍ ଦେଦେଗା ।"

"କ୍ୟା ଫର୍କ ପଡ଼ତା ହେ ୟାର ।' ମୁଁ କହିଲି ।

"ଫରକ୍ ଅଲବତ୍ ପଡ଼ତା ହେ । ହଁ, ଚଚ୍ଚେମିଆଁ, ତୋର କିଛି ପ୍ୟାର ମହବତ୍ ଅଛି କିବେ ? ଶଳାର ଯୋଉଡ ଚେହେରା । କାହାଁକୁ ରଖିଚୁ କିବେ ?

"ହଃ ହଃ । ମାସୁକା କହିଥିଲା—ଓଲୁଅ ପରି ଝିଅ ।

"ଓଃ ହାଃ ହାଃ ହାଃ ମଜେଦାର୍ । ମିଆଁ ତୁ ବି ଅଜବ ଅଜବ ମଜେଦାର କଥା କହୁ । ହଉ୍ ହୋଗୟା । ତୋର ମାସୁକା ବି ଖୁବ୍ ରସିକା ।

"ନାଇଁବେ ମୁଁ ଫିଲ୍ଲଗୀ କରୁଥିଲି । ମାସୁକା ଫାସୁକା କେହି ନାହିଁ ।

ହଁ ବଡ଼େମିଆଁ କରୁ କଅଣ କହିବୁଟି । ତୋ ପକେଟରେ ପଇସା ସଦାବେଳେ !

"ଇଧର୍ କା ପଓା ଉଧର୍ । ଦେଖ୍ ଆଲ୍ଲା ପରବର୍ ଦିଗର୍ ଭରେ ।

"ଶଳା ଭୁଅଡ଼ି କାହାଂକା ।"

"ଆଉ ତୁ କଣ କରୁ ସଜେନ୍ ?"

"ମୁଁ ଶଳା କିଛି କରେନାହିଁ । କଣ ଛୋଟଲୋକ ହୋଇଚି ? ବି କମ୍. ପାଶ୍ ।"

"ଯାବେଃ କେତେ ଦେଖିଚି ବି.କମ୍, ପାଶ୍ । ଖାଲି ମୋ ଆଗରେ ଭଡ଼ୁଁ ।"

"ସେତିକିତ ଦୁଃଖ ମିଆଁ । ଅନ୍‌ଗିନତ୍ ଆଦମୀ ବି.କମ୍. ପାଶ୍ କରୁଚିନି ।"

"କାହିଁକି ?"

"କେତାଣି । ଆଉ ଦୁଆର ଦୁଆର ବୁଲୁଚିନି ।"

"ତୁ ମୋ ଆବ୍‌ବାଙ୍କୁ ଗୁଲିଆ ଦୋସ୍ତ ।"

"ଯାବେଃ ! ଜୁଆଚ୍ଚୋରୀ କରିବାକୁ ଯିବି ମୁଁ ? ବି.କମ୍. ପାଶ୍ ।"

"ରଖ୍ ତୋ ବି.କମ୍. ପାଶ୍ । ଶଳା ଖାଇବାକୁ ପାଏନା । ଭିକାରି, କୁକୁର ଶଳା—ବି.କମ୍. ପାଶ୍ ।"

"ବଢ଼େ ମିଆଁ, ଭିକାରି କୁକୁର ବି ଜୁଆଚ୍ଚୋର, ଠୁଁ ବଢ଼ ।"

ଏସ ଆହୁରି କଣ ସବୁ କହିଲା । ଦିମାଗ୍ ଗରମ କଲାପରି ଗାଳିସବୁ । ମୋର ବି ଖୁନ୍ ଚଢ଼ିଗଲା । ହାତରେ ଥିଲା ଗୁଡ଼ଲିର ବୋତଲ । ଯାହାରେ ଥୋଇଲି ତା ମୁଣ୍ଡରେ । ରକ୍ତରେ ନହୁ ନୁହାଣ ।

"ଶଳା ପଠାଣ ତୁ ମୋର ମୁଣ୍ଡ ଫଟାଇ ଦେଇଚୁ ।"

"ବେଶ୍ କଲି ।" ମୁଁ କହିଲି ।

"ହାରାମ୍ଖୋର ଶଳା, ଛୋଟଲୋକ ଶଳା ....

କହୁ କହୁ ସେ ଅଚେତ ହୋଇଗଲା ଆଉ ଘୋଡ଼ିଆ ଉପରୁ ଓଲଟି ପଡ଼ିଲା । ତଳେ ପଡ଼ିଯାଇ ଗୁଣ୍ଡେ ବାନ୍ତି ବି କରି ପକେଇଲା । ରୁଟ ଆଉ ଗୁଡ଼ଲି ମିଶା ଅନ୍ଦିଳା ଗନ୍ଧ ବାହାରିଲା । ସେ ଏକ ଝଞ୍ଜଟ୍ । ଦିଟା ଲୋକଙ୍କୁ ଦେଇ ଟିକ୍‌ସାଟାଏ ଡକେଇ ତାକୁ ହାସପାତାଳ ପଠେଇବାକୁ ହେଲା । ସନ୍ଧାଁକି

ଘାବରେଇ ଗଲି । ଖୁସି ସବୁ ମଜା କିର୍‌କିରା କରିଦେଲା । ଫେରିଆସିଲି ଅଡ୍ଡାକୁ । ତଥେ ଡି'ତଣ କିଏ ହେଉଥିଲେ । ଭଗେଇ ଦେଲି । ହରବଖତ ଖଳା ଏ ଚିରକତ କରୁଚିନି । ଦୁଆର ଲଗେଇ ଦେଇ ଶୋଇଗଲି ।

ପହିଲେ ଦରବାଜା ଖଡ୍ ଖଡ୍ ହେଲା । ତା ବାଦ୍ ଜୋର୍ ଜୋର୍ ଧକ୍କା ଲାଗିଲା । ମୁଁ ଆର ମାଲପତ୍ର ସମ୍ଭାଳି ଦେଲି । ଖଳାଟା ଲାଗି ହଇରାଣର ଶେଷ ନାହିଁ । ଖଳା କୋଉଠି ବାହାରେ ଥିଲା ଭଲ ଥିଲା । କଣ ପାଇଁ ଏ ମହ-ଚକୁ ଆସେ । ସେ ଆସେ । ତା ପଛେ ପୁଲିସ । ପୁଲିସ ଲଗେଇଚନ୍ତି ଖଳା । ଦରବାଜା ଫାଙ୍କ କରି ଦେଖିଲି, ଖୁବ୍ ସୁରତ୍ ଅଉରତ୍‌ଟିଏ । ଏଠିକି ଅଉରତ୍ କୁଆଡ଼ୁ ଆସିବ ?

"କାହାକୁ ଖୋଜୁଛନ୍ତି ମେମ୍‌ସାବ୍ ?

"ଚଢେମିଆଁ, ସୁରେନ୍‌ବାବୁ ଆସିଚି କି ?

"ନା ମେମ୍‌ସାବ୍ ।

"ସୁରେନ୍‌ବାବୁ କାହିଁ ? କୋଉଠି ଅଛି ?"

"ଜାଣିନି ମେମ୍‌ସାବ୍ ।"

"ଆଶ୍ଚର୍ଯ୍ୟ । ଆଉ ମତେ କହିଲା ତମପାଖୁ ଆସୁଚି ।

"କେତେବେଳେ ?"

"କାଲି ସଂଜବେଳେ ।"

"ମୁଁ ତାକୁ କୋଉଦିନୁ ଦେଖିନି, ମେମ୍‌ସାବ୍ ।"

"କାଲି ତୁମ ସାଙ୍ଗରେ ଦାରୁ ପିଇନି ସେ ?"

"ଜି ନହିଁ ।"

"ଚଢେମିଆଁ, ମୁଁ ସବୁ ଦେଖିଚି । ସବୁ ଜାଣେ । କୁହ ସେ କୋଉଠି ।'

"ଅଲ୍ଲା କସମ୍ ମେମ୍‌ସାବ୍—

"କସମ୍ ଖା ନା ଚଢେମିଆଁ । ମୁଁ ଦେଖିଚି ।"

"କଣ ଦେଖିଛନ୍ତି ?"

"ତମେ ଦୁହେଁ ଏକାଠି ବାହାରିଯିବାର ।"

"ଆପଣ ନିଜେ ଦେଖିଚନ୍ତି ?"

"ହଁ ।"

"ଆପଣ କିଏ ?"

"ମୁଁ ଏସ୍.ପି. ସାହେବଙ୍କ ସ୍ତ୍ରୀ ।"

"ଏସ୍ ପି. ସା'ବଙ୍କର ..... ମେମ୍ସାବ୍, ମୁଁ ସତ କହୁଚି ମେମ୍ସାବ୍.....

"ମୁଁ ଦେଖିଚି । ସ୍ତେନ୍ କାହିଁ, ବଡ଼େ ମିଆଁ ?"

ଏସ୍ ପି: ସା'ବଙ୍କର ମେମ୍ସାବ୍ ଆସନ୍ତି । ବଡ଼େ ଘରକୀ ଲଡ଼କୀ, ବଡ଼େ ଘର୍‌କୀ ଅଉରତ୍, ସ୍ତେନ୍ ସାଙ୍ଗେ କି ଓ୍ବାସ୍ତା ? ମଡଡିଙ୍ଗ୍, ଗୁଣ୍ଡାଟା, କମ୍ୟୁନିଷ୍ଟଟା ।

"ସ୍ତେନ୍ କାହିଁ ?"

"ଅଂଦର ଆପନ୍ତୁ ମେମ୍ସାହାବ । ସବୁ କହୁଚି ।"

"ମୁଁ ଭିତରକୁ ଯିବିନାହିଁ । ଏଇଠି କହ ।"

"ସେ ହାସପାତାଳରେ ଅଛି ।"

"କଣ କହିଲ ?"

"ସେ ହାସପାତାଳରେ ଅଛି ।"

"କୋଉ ହାସପାତାଳ ?"

"ମୁଁ ଜାଣେନା ମେମ୍ସାବ୍ ।"

"ମାନେ ?"

"ମାନେ ଆଉଜଣେ ତାଙ୍କୁ ନେଇ ଯାଇଥିଲା ।"

"କାହିଁକି ? କଣ ହୋଇଛି ତା'ର ?"

"ମୁଣ୍ଡ ଫାଟି ଯାଇଥିଲା ।"

"କେମିତି ?"

"କେଜାଣି ?"

"ତମେ ତା ମୁଣ୍ଡ ଫଟାଇଛ ।"

"ଜୀ ନହିଁ ।"

"ଚୁପ୍ । ସତ କରି କହ ।"

"ମାଫ୍ କରିବେ ମେମ୍ସାବ୍ । ଟଙ୍କ ଗାଳି ଫଣ୍ଡିତ କରେ ଜେନଙ୍ଗା ଖୁଣ ଚଢ଼ିଯାଏ ମଥାକୁ । ନିଶା ବି ଚଢ଼ିଥିଲା । କସୁର ମୋର ମେମ୍ସାବ୍ ।"

"ବଡ଼େମିଆଁ, ମୁଁ ଏଇଠି ବସୁଛି ତମ ଘର ଭିତରେ । ବାହାରୁ ତାଲା ଲଗେଇଦିଅ । ତମେ ଖବର ନେଇ ଆସ ସେ କୋଉଠି ଅଛି । ତା'ପରେ ଆଉ ତମକୁ ବିରକ୍ତ କରିବିନି ।"

"ବିରକ୍ତ କ'ଣ ମେମସାବ୍ । ଅପନା ଫର୍ଜ୍ ହେ ।"

ଖବର୍ ହୋଇଗଲାଣି ଟେଲ୍ । ମୁଣ୍ଡଟା ଟିକେ ଟିକେ ଝାଇ ଅଛି । ଏମିତି ଗୋଟାଏ ଖୁବ୍‌ସୁରତ୍ ଅଉରତ ସ୍ତେନ ଫସାଇଛି । ଆଉ ହାରାମଜାଦା ଚୁପ୍ ପଡ଼ିଛାନ ଅଛି । ସର୍ଦାରଜୀ ଦୋକାନରେ ପଟି ଭିଡ଼ା ହୋଇଛି । ସ୍ତିରେ

ବାରବାର, ଦିନରେ ଶାଳା ଶୁଅର ପରି ଘୁଙ୍ଗୁଡ଼ି ମାରୁଚି । ବହୁତ ଆୱାଜ ହେବା ପରେ ଛୋକାରଟାଏ ଉଠିଲା । ମୁଁ ତାକୁ ଯେତେ ଯାହା କହିଲି ସେ ବିଲ୍‌କୁଲ୍ କିଛି ବୁଝିପାରିଲାନି । କିଏ ଯାଉଥିଲା, କା ମୁଣ୍ଡ ଫାଟିଥିଲା, ସେ କିଛି ଜାଣିନି । ଶାଳା ଗୁଳି ପଡ଼ିଛି ଉଡ଼ିଯାଉ । ନିଶା ଦେଖେଇ ସର୍ଦ୍ଦାର୍ଜୀ ଯାଙ୍କୁ ସବୁ ବଶ କରେ । ତାକୁ ପଞ୍ଜାବି ସର୍ଦ୍ଦାର୍ଜୀଙ୍କୁ ଉଠେଇଲି । ସେ ବି ବୁଝି ପାରିଲାନି ।

"ଅଂଦର ଗୁଳିଆଉ କଲିମ ଖଇ, କିଛି ମାଲ ପଡ଼ିଯାଉ ।"

"ରଜେନ କାହିଁ ?"

"ରଜେନ ଦୋସ୍ତ ? କେବେଠୁଁ ଦେଖିନି ।"

ତାର କଲର ପକ୍‌ଡ଼ି ଧରିଲି । "ମୋ ସାଥିରେ ଦିଲ୍ଲଗୀ ! କଲିମ ଖାଁ କାହାକିକି ଛାଡ଼େନା ହୁଁ ।"

"ଗରମ ହୁଅନା ଭଦ୍ରେମିଆଁ । ନିଶା ଚଢ଼ିଚି । ୟାଦ ନାଇଁ ।"

"ଛୋକର୍ କାଲି—ସେ ରିକ୍‌ସା ଡାକି ଯାଇଥିଲା ।"

"ଯାଇଚି ମାଲ୍ ଆଣିବାକୁ । କଲିମ୍ ଖଇ; ଭଲ ମାଲ୍ ଅଛି । ଅଣେଇବି ।"

"ଅଚ୍ଛା । ମଥାଟା ବି ଘୁର୍ ଘୁର୍ କରୁଚି ।

ଅଧଘଣ୍ଟାପରେ ଗୁଳି ଚଳେଇ ଦେଲି । ତା'ପରେ ହାସପାତାଳ ଡିଟା ଘୁରି ଦେଖିବାକୁ ବାହାରିଲି । ପାଖ ହାସପାତାଳରେ ମିଳିଗଲା । ତା ମଥାରେ ବ୍ୟାଣ୍ଡେଜ ହୋଇଛି । ସେ ଶୋଇଛି । ଗୁଳିଆପିଲି ।

ମନରେ ସଇତାନ ଚଢ଼ିଗଲା । ଖୁବ୍ ସୁରତ ଅଉରତ୍ । ମୋ ଘରେ ରଜେନର ମାଲ । ରଜେନ କିଏ ମୁଁ କିଏ ? ଦୁଆର ଫିଟେଇଲି, ଅଠ ଠିଆ ହେଲା । କବାଟ ଲଗେଇ ଦେଲି ।

"ଭଦ୍ରେମିଆଁ ....."

ସେ ଡରିଯାଇଛି । ତା ଆଖିରେ ଅଶ୍ରୁ । ଦିମାଗ ବିଗିଡ଼ିଗଲା । ଖୁବ ସୁରତ ଆଖିର ଖୁବ ସୁରତ ଅଶ୍ରୁ । ମୁଁ ଅଟେଇଲି ।

"ମୁଁ ତୋର ବହନ, ଭଦ୍ରେମିଆଁ ।

ତାକୁ ଧକାଏ ଦେଇ ତଳେ ପକାଇଦେଲି । ତା ମୁହଁକୁ ପାପୁଲିରେ ବନ୍ଦ କରିଦେଲି । ଏସବୁ ଖେଲ ମୋ ପାଖରେ ଚଳିବନି । ଏମ୍.ପି: ସାହାବଙ୍କର ଭତିଜା, ରଜେନର ମାସୁକା, ଆଉ କଲିମ ଖାଁର ବହନ । ସେ ବହୁତ କସଂ

ଓତ, ବହୁତ ଧସ୍ତାଧସ୍ତି କଲା । ମୁହଁଟା ପୁଣି ବାହାର କରିନେଇ କହିଲା, "ମୁଁ ତୋର ବହନ ।" ଏମିତି ଖୁବସୁରତ ବଦନ, ଏମିତି ଗରମ ଗରମ ଦିମାକ୍, ଆଉ ଅଣରା ବଖତ୍ । ତା ଦିହଟା ଥଣ୍ଡା ।, ଆଁଶୁର ଫୁଆର ତାର ଆଖିରେ । ଅବଶୋଷ—ଅବଶେଷ ।

"ମୁଁ ତୋର ବହନ୍, ବଡ଼େମିଆଁ ।

"ଚୁପ୍‌କର୍ ।' ତାକୁ ଦି ଧମକ ଦେଲି । ତାର ଲୁଗାପଟା ପୁଣି ତା ଉପରକୁ ପକେଇ ଦେଇ ଆଉ ଘରକୁ ଚାଲିଗଲି । କଲିମ ମିଆଁର ଦିଲ୍‌ରେ ପୁଣି ଭକ୍ସ୍ । ସେ କପଡ଼ା ପିନ୍ଧିବା ଯାକେ ତାକୁ ଟାଇମ୍ ଦେଲି । ଲାଗିଲା ଯେମିତି ମୁଁ ଗୋଟାଏ ବଡ଼ କସୁର କରି ପକେଇଛି । ଖୁବ୍ ଗୁସ୍‌ସା ଆସିଲା ଆପଣା ଉପରେ । ଫେରି ଆସି ଦେଖିଲି, ସେ କପଡ଼ା ପିନ୍ଧି ସେଇମିତି ବସିଛି ।

"ଆଉକଣ କରିବାକୁ ବସିଚି ଏଠି, ବଦ୍‌ମାସ୍ ଅଉରତ୍ ।"

"ବଡ଼େମିଆଁ—ରହେନ୍ କାହିଁ ?"

"ତାହାନ୍ନାମ ମେଁ ।"

"ରହେନ କାହିଁ' ବଡ଼େମିଆଁ ?"

ହାସପାତାଳ ଆଉ ବେଡ଼୍ ନମ୍ବର ଦେଇଦେଲି । ଦରବାଜା ଖୋଲି ଠିଆହେଲି ।

"ବହୁତ ତକଲିଫ ଦେଲି ଖୁଦାଜାନ୍, ବହୁତ ବହୁତ ଶୁକ୍ରିୟା—ସେ କହିଲା ।

ସେ ଚାଲିଯାଉଥିଲା ।

"ବହନ୍" ମୁଁ ଡାକିଲି ।

"ରହେନ୍ ମୋର ଗହର ଦୋସ୍ତ । ରହେନ୍ ମୋର ଜାନ୍ । ସେ ଯେମିତି ନ ଜାଣେ । କସୁର ମାଫ କର୍‌ନା ।"

ମୁଁ ତାକୁ କିଛି କହିବିନି ବଡ଼େ ମିଆଁ । ତମେ ବହୁତ ଅଚ୍ଛା ଆଦ୍‌ମୀ ହଉଚ ମିଆଁ ।"

ସେ ବାହାରିଗଲା ।

—○—

ସଂପାଦକ : ପ୍ରସୂନ
ଆଦର୍ଶପଡା, ବଲାଙ୍ଗୀର ୧

▪ ଦୁର୍ଗା ଚରଣ ପରିଡ଼ା

# ଗଜପତି

(ବନ୍ଧୁ ଶଶୀ ରଥ ଓ ନଟ କରଙ୍କୁ)

ଜାଣ,
ରଜା ସୁନ୍ଦର କାହିଁକି ?

ପ୍ରତି ମୁହୂର୍ତ୍ତରେ
ମୃତ୍ୟୁ ପାଇଁ
ପ୍ରସ୍ତୁତ ବୋଲି ।

▪▪

ଜୀବନ ସୁନ୍ଦର କାହିଁକି ?

ମୃତ୍ୟୁର ଛାଇ ତଳେ
ପ୍ରତି ମୁହୂର୍ତ୍ତରେ
ସୂର୍ଯ୍ୟ-ସ୍ନାନ କରେ ବୋଲି,
ବର୍ଦ୍ଧିମାନ୍ ବୋଲି !

▪▪

ମା' ସୁନ୍ଦର କାହିଁକି ?

ନିଜ ପଣତରେ
ପାପ ଓ ପୁଣ୍ୟ ଦେଇ
ନିଜ ଶୋଣିତର
ଶାଣିତ କରବାଳ ଓ ସୁରଭି ଦେଇ
ପ୍ରତି ମୁହୂର୍ତ୍ତରେ
ମୃତ୍ୟୁକୁ ଜୟ କରେ ବୋଲି,
ମହାକାଳୀ ବୋଲି,
ଶ୍ୟାମା ବୋଲି,
ଶିବାନୀ ବୋଲି ।

ପୁରୀ, ୧-୭ ୮୧

—o—

• ଶ୍ରୀ ବଂଶୀଧର ରାଉତ

# ଆଖିର ଆଇନାରେ ପୃଥିବୀର ଦୃଶ୍ୟ

ସେମାନେ ହସିଲେ ।

ଏଣୁ ଖାରବେଳ ହସିଲା ।

ସେମାନେ କାହିଁକି ହସିଲେ ତାର କାରଣ ଖାରବେଳକୁ ଜଣାନାହିଁ, ତେବେ ବି ଖାରବେଳ ସେମାନଙ୍କ ପରି ହସିଲା । ସେମାନେ କ୍ରମେ ଜଣ ଜଣ ହୋଇ ଚାଲିଗଲେ କିନ୍ତୁ ଖାରବେଳ ସେଇଠାରେ ଚୁପ୍‌ଚାପ୍ ରହିଗଲା ।

ତା ହସଟା ବି ଅଧାରେ ଅଟକିଗଲା । ଓଠ ଦୁଇଟା ଦରଖୋଲା ହୋଇ ରହିଗଲା ଏବଂ ଖାରବେଳ ସବୁଆଡକୁ ଚାହିଁଲା ।

ଅନେକ ଦୂରରେ ସେମାନେ ଚାଲିଯାଉଛନ୍ତି ବେପରୁଆ ଭାବରେ; ଅଥଚ ସେହିମାନଙ୍କ ହସ ଦେଖି ଖାରବେଳ ହସି ପକେଇଥିଲା ।

ଯିଏ ହସର କାରଣ ନଜାଣି କେବଳ ଅନ୍ୟମାନେ ହସିଲେ ବୋଲି ନିଜେ ହସିପକାଏ ତାକୁ ବୋକା କୁହାଯାଏ ।

ସତକୁସତ ଖାରବେଳ ବୋକା ବୋକା ଅନୁଭବ କଲା । ଦୁଇକାନକୁ ମୋଡି ସତ୍ୟବାନ ଶପଥ କଲା ଆଉ କେବେ ସେ ଏମିତି ହସିବନି । କାହିଁକି ହସିବ ? ସେମାନଙ୍କଠୁଁ ତାକୁ କଣ ମିଳିବ ?

ହୁଁ, ସେମାନେ ହସି ହସି ପକେଇଲେ । ଏମିତି ବି ତା ମା ଦିନେ ତାକୁ କନ୍ଦେଇ କନ୍ଦେଇ ପକେଇଥିଲା । ମା, ଯିଏ ତାକୁ ଦଶମାସ ଦଶଦିନ ଧରି ଗର୍ଭରେ ବୋହି ବୋହି ନୟାନ୍ତ ହୋଇ ଜନ୍ମ ଦେଇଥିଲା । ଅଚାନକ ରୋଗରେ ପଡି ମା' ଚାଲିଗଲା । ସେଦିନ ଖୁବ୍ କାନ୍ଦିଥିଲା ଖାରବେଳ ଧକେଇ ଧକେଇ, ରହା ଟେକି ଟେକି । ସେହିଦିନଠୁଁ ମା ବିହୀନ ଏଇ ଦୁନିଆଁଟା ଖାରବେଳ ପାଇଁ ଉଦାସ, ଅନାବିଷ୍କୃତ, ରହସ୍ୟମୟ, ଅବୁଝା ଅବୁଝା ।

ବାବା କିନ୍ତୁ ଖାରବେଳର ଦୁଃଖ ସହି ନପାରି ନୂଆ ମା'ଟିଏ ଆଣି ଦେଲେ । ମା' ଦେଖିବାକୁ ଠିକ୍ ଦେବୀ ପରି । ପ୍ରଥମେ ତାଙ୍କୁ ମା' ଡାକିବାକୁ

ଚେଷ୍ଟା କଲାବେଳେ ଖାରବେଳର ତର୍ଣ୍ଣି ଅଠା ଅଠା ହୋଇଯାଉଥିଲା । ଛାତିଟା ଖଠପଡ ହୋଇଯାଇ କଳିଡାଟା ଫୁହିଁ ହୋଇ ଯାଉଥିଲା । ମା’ ତାକୁ ଦେଖି ପକେଇଲେ ତା ମୁହଁଟା ପୋଡି ହୋଇଯାଉଥିଲା ଏବଂ ମୁହଁଟା ପୋଡି ହୋଇ ଯାଉଥିଲା ଖାରବେଳର । କ୍ରମେ ସବୁ ଦେହ ଘୂହା ହୋଇଗଲା । ସେ ନୂଆ ମା’ଙ୍କୁ ମା’ ବୋଲି ଡାକିଲ । ମା’ ହଁ କଲେ ।

ଖାରବେଳ ଅନୁଭବ କଲା,ମା’ଙ୍କର ଏଇ ହଁ’ଟା ହିଁ ପ୍ରତିବାଦର ସ୍ୱର । ଯାହା ସୂଚାଇଦିଏ, ‘ମୁଁ ମା’ ନୁହେଁ, ସାବତ ମା’ ।’’

ଖାରବେଳର ବୟସ ଯେତିକି, ମା’ଙ୍କର ବୟସ ସେତିକି । ଏଥିପାଇଁ ଖାରବେଳକୁ ମା’ ଡାକିବାକୁ ଲଜ୍ଜା ଲାଗେ ।

ଚେଳେବେଳେ ଖାରବେଳ ମା’ଙ୍କୁ ବଲବଲ କରି ଦେଖେ, କାରଣ ମା ମାତୃତ୍ୱ ଦେବା ପରିବର୍ତ୍ତେ ଅହଙ୍କାରକୁ ଦେଇ ମୋହାଛନ୍ନ ହୋଇଉଠନ୍ତି । ଖାରବେଳ ନିଜକୁ ଖୁବ ଛୋଟ ମନେକରେ । ସେ ଛୋଟ ପିଲାଟିଏ । ହଁ, ସେ କିଛି ଜାଣେନି । କେବଳ ବାବାହିଁ ବାବା ଓ ମା’ ହିଁ ମା’ ।

କଲେଜରେ ପଢ଼ିଲା ପରେ ଖାରବେଳ ସବୁ ଜାଣିଲା । ସକାଳଠାରୁ ସନ୍ଧ୍ୟାର ଦୂରତ୍ୱ ସହିତ ସନ୍ଧ୍ୟାରୁ ପୁଣି ସକାଳର ଦୂରତ୍ୱ ମାପିଲା । ତା ମନ କ୍ୟାମିତି ବକ୍ସର ଯନ୍ତ୍ରପାତିଦ୍ୱାରା । ଯନ୍ତ୍ରଗୁଡ଼ାକ ଛୋଟଛୋଟ କିନ୍ତୁ ଦୂରତ୍ୱ ବେଶୀ । ବ୍ୟବଧାନର ସମୟକୁ ମାପିଲାବେଳେ ଖାରବେଳ ନିଜ ନାଁଟାକୁ ବି ଭୁଲିଗଲା । ସେ ଯେ ଖାରବେଳ ସ୍ୱାଇଁ ଏକଥା କେମିତି ଯେ ସେ ଭୁଲିଗଲା, ଏହା ନ ଜାଣିପାରି କ୍ରମେ ଉଦାସ ହୋଇଗଲା । ବନ୍ଧୁମାନେ କହିଲେ, ‘‘ଖାରବେଳଟା ପାଗଳ ହୋଇଯାଉଛି ।’’

କଲେଜ ପିଲାଙ୍କ କଥା । ତିଳକୁ ତାଳ କରିବା ତାଙ୍କ କାମ । କେହି କେହି ତାକୁ ଛଇଖାଣ କରନ୍ତି । କିଏ ମୁଣ୍ଡକୁ ଠଣି ମାରେ । କିଏ ସାର୍ଟ ପଛ ପଟରେ ‘ଗଧ’ ଲେଖେ । ଆହି ଫିଙ୍ଗେ । କିଏ କମେଣ୍ଟ କରେ ତ କିଏ ପାଗଳ କୁହେ ।

ସବୁ ଜାଣେ, ସବୁ ଶୁଣେ ଓ ଦେଖେ ଖାରବେଳ । ଚୁପ୍‌ଚାପ୍ ରୁହେ । ନିଜର ଅସହାୟତା ପାଇଁ ରେରେଇ ରେରେଇ କାନ୍ଦେ ଛଟପଟ ହୋଇ ! ହଠାତ୍ ଦିନେ ସେ ଆବିଷ୍କାର କଲା ତା ଭଳି ଆଉ ଗୋଟିଏ ଝିଅ ମଧ୍ୟ ଲୁଚେଇ ଲୁଚେଇ କାନ୍ଦୁଛି । ସେ ବି ଏଇ କଲେଜରେ ପଢୁଛି । ତାକୁ ବି ପିଲାଏ ଚିଡ଼ାଇ ଖୁବ୍ ମଜା ନିଅନ୍ତି । ସେ ଗ୍ଳାନିଗ୍ଳାନି କଲେଜ ଆସେ । ମେଞ୍ଚା

ମେଞ୍ଚା ଟୋକା ତା ପଛରେ ଲାଗନ୍ତି । ଆରମ୍ଭ ହୁଏ ବୋଲିବାଣୀ । ଏହା ସତ୍ୟ ଯେ ସେ ଖୁବ୍ ରୂପବତୀ । ତା ରୂପର ମାଧୁର୍ଯ୍ୟରେ ଐଶ୍ୱର୍ଯ୍ୟର ଏକ ଝଲକ ପୃଷ୍ଠି ପାଇଁ ଟୋକାଏ ମାତନ୍ତି ବଢି ପାଣି ପରି । ସେ କାହାକୁ କିଛି କୁହେନି । ଗୋଡତଳର ପୃଥିବୀକୁ ଚାହିଁଚାହିଁ, ଦୁଃଖ କଷିକରି ଓ କାଢିକାଢି ଯାଏ ଏବଂ ଆସେ । ତା' ଦୁଃଖ ସେ ନିଜେ ହଜମ କରେ । କାହାକୁ କିଛି କୁହେନି; ମାତ୍ର ଉଦାସୀନତାର ଚିଲ ଉଡ଼ିଯାଏ ତା ମୁହଁର ଇଲାକାରେ ।

ସବୁ ପିଲାଏ ହସଖୁସି କଲାବେଳେ ଖାରବେଳ ଭଳି ସେ ବି ଏଠି ସେଠି ମୁହଁ ପୋତି କ'ଣ ସବୁ ଭାବେ ।

ଖାରବେଳ ତାକୁ ଦେଖେ ।

ସେ ଖାରବେଳକୁ ଦେଖେ ।

ଆଖି ଆଖିର ଭାଷାରେ ସେମାନେ ପରସ୍ପର ପ୍ରତି ସମବେଦନା ଜଣାନ୍ତି । ଶେଷରେ ଏପରି ହେଲା ଦୁହେଁ ସାଙ୍ଗ ହୋଇ କଲେଜ ଆସିଲେ । ଖାରବେଳ ତାକୁ ପ୍ରତ୍ୟହଃ ହଷ୍ଟେଲରୁ ଆଣି କଲେଜ ଆସେ ଏବଂ ଗଲାବେଳେ ଛାଡିଦେଇଯାଏ ।

ପିଲାଙ୍କ ଗହଳି କ୍ରମେ କମିଗଲା । ଖାରବେଳ ହାତ ମୁଠା ମୁଠା କରି ଦିନେ ଆସିବା କଲା । ଯିଏ ସେମାନଙ୍କୁ କମେଣ୍ଟ କରିବ ସେ ମୁଥା ମାରି ତା ଛାମୁଦାନ୍ତକୁ ପ୍ରଥମେ ଭାଂଗିଦେବ । ଖାରବେଳ ହାତରେ ଗୋଟାଏ କଡ଼ା ପିନ୍ଧିଲା । ଅଣ୍ଟାରେ ଗୋଟାଏ ଚେନ୍ ବାନ୍ଧି ଆସିଲା । ପକେଟରେ ତୀକ୍ଷ୍ଣ ଛୁରୀଟିଏ ରଖିଲା । କଳିଏ ସିନ୍ଦୂର ମୁଣ୍ଡରେ ମାରି ସେହିମାନଙ୍କୁ ଟାଣ ଟାଣ ଆଖିରେ କଟମଟ କରି ଚାହିଁଲା । ଯେଉଁମାନେ ତାକୁ କମେଣ୍ଟ କରୁଥିଲେ, ସେମାନେ ଏବେ ମେଣ୍ଢା ବନିଗଲେଣି ।

ହଁ' ସେଇ ଝିଅଟିର ନାଁ ଆପଣଙ୍କୁ କହିଦିଏ । ସେଇ ଝିଅଟିର ନାଁ ସତ୍ୟବତୀ । ନାଁ ସହିତ ତା ଚରିତ୍ରର ଯଥେଷ୍ଟ ସମ୍ପର୍କ ରହିଛି । ପ୍ରକୃତରେ ହିଁ ସେ ସତ୍ୟବତୀ । ନିଜ କଥା ଆମେ ପରସ୍ପର କୁହାକୁହି ହୋଇଗଲୁ । ଏଥିରୁ ଯାହା ଜାତ ହେଲା ତାର ନାମ 'ପ୍ରଣୟ' ।

କଲେଜରେ ଖାରବେଳର ରୂପ ଦେଖି କେହି ଆଉ ସେମାନଙ୍କ ପ୍ରତି କଟାକ୍ଷ କଲେନି । ଏଥିରେ ସତ୍ୟବତୀ ଖୁବ୍ ଖୁସି ହେଲା । ତା ଓଠରେ ମାଡି ଉଠିଲା ହସର ଫସିଲ । ଖାରବେଳ ସତ୍ୟବତୀର ହର୍ଷୋତ୍‌ଫୁଲ ଭାବ ଦେଖି ଖୁସି ହେଲା । ଯେଉଁଦିନ ସତ୍ୟବତୀକୁ କମେଣ୍ଟ ମାରୁଥିବା ଟୋକାଟାର କାଲର

ଧରି ଖାରବେଳ ଦୁଇଟା ଚଟକଣି ଧଡ଼ାସ ଧଡ଼ାସ ଦେଲା ଏବଂ ପୁନର୍ବାର ଛୁରୀଟା ତାହାରକରି ଭୁଷିଦେବାକୁ ଯାଉଥିଲା ସେହିଦିନ ଯଦି ସତ୍ୟବତୀ ତା ହାତ ଧରି ପକେଇ ନିବୃତ୍ତ ହେବାକୁ କହି ନ ଥାନ୍ତା, ତେବେ ଖାରବେଳ ନିଶ୍ଚୟ ସେ ବଦ୍‌ମାସ୍ ଟୋକାଟାକୁ ଖୁନ୍ କରି ପକେଇଥାନ୍ତା । ସତ୍ୟବତୀ ଖାରବେଳକୁ ଜବରଦସ୍ତ ଟାଣି ଆଣି ସେଦିନ କଲେଜରୁ ପଳେଇ ଯାଇଥିଲା ।

ଦୁହେଁ କଲେଜ ଛତା ନିକଟସ୍ଥ ବୁଦ୍‌ବୁଡିଆ ଜଙ୍ଗଲଟା ପାରିହୋଇ ଯେଉଁଠି ପହଞ୍ଚିଗଲେ ସେ ସ୍ଥାନଟା 'ବରୁଣେଇ' । ସେହି 'ବରୁଣେଇ' ଠାକୁରାଣୀଙ୍କ ସାମ୍ନାରେ ଖାରବେଳ ତା ଦେହକୁ ଛୁରୀମାରି ଖଣ୍ଡିଆ କରି ଯେଉଁ ରକ୍ତ ବାହାରିଲା ତାକୁ ସତ୍ୟବତୀର କପାଳରେ ପିନ୍ଧେଇ ଦେଲାବେଳେ ସତ୍ୟବତୀର ସାରା ଶରୀର ଝାଳରେ ବୁଡ଼ିଯାଇଥିଲା ଏବଂ ସେ କେବଳ ଖାରବେଳର ମୁଖ ଦର୍ପଣରେ ନିଜ ଛବିଟିକୁ ଦେଖିବା ପାଇଁ ଆଶାୟୀ ନୟନରେ ଗ୍ଳୁହିଁ ରହିଲା । ସେଠି ସେହି ନୀରବ ଇଲାକାର ମରହଦ ମଧ୍ୟରେ ମନ୍ଦ ମନ୍ଦ ପବନ ବହୁଥିଲା ଅନନ୍ତ ବେଗରେ ।

ଖାରବେଳର ନିଜ ପ୍ରତି ନବଜାତ ମାୟାରେ ସେ ଅନୁଭବ କରୁଥିଲା, ପୃଥିବୀର ଦୃଶ୍ୟ ଖୁବ ଭଲ । ଆଖିର ଆଇନାରେ ଏହାର ଦୃଶ୍ୟ ଦେଖିଲେ ଇଚ୍ଛାହୁଏ ପକ୍ଷୀଟିଏ ହୋଇ ଆକାଶରେ ଉଡ଼ିବାକୁ । ଫୁଲଟିଏ ହୋଇ ଫୁଟି ଯିବାକୁ । ଏହାରି ତମାଳମାଳ ଗୋହିରୀ ରାସ୍ତାରେ ବଂଶୀ ବଜେଇ ବଜେଇ ଅଶ୍ୱତ୍ଥ ବେଗରେ ଧାଇଁବାକୁ । ନଈରେ ଗାଧୋଇ ପାଧୋଇ ଆକତ ମାକତ ହୋଇଯିବାକୁ । ନିଜକଥା ନ ଭାବି ତାରି କଥା ଭାବିବାକୁ ଯାହାକୁ ନିଜ ଆଖିର ଆଇନାରେ ସ୍ପଷ୍ଟ ଦେଖିହୁଏ । ଘନଘନ । ପୁନଃ ପୁନଃ ।

ତାପରେ ଖାରବେଳର କ'ଣ ହେଲା କେଜାଣି ସମସ୍ତେ ତାକୁ ଦେଖୁ ଦେଖୁ ଡରିଲେ । ଭୟରେ କେହି କିଛି କହିଲେନାହିଁ । ସେ ଯାହା କଲା କିମ୍ବା କହିଲା ସବୁଠିକ୍ । ସେ ଜାଣିଲା ସାଧୁ ହେଲେ ମରିବ । ଏ ଯୁଗରେ ଗୁଣ୍ଡାମୀ କଲେ ମଜା ଅଛି । ସମସ୍ତେ ଭୟ କରିବେ ।

ଖାରବେଳ ଖୁବ୍ ଖୁସି ହେଲା । ତା'ର ନିଃସଙ୍ଗତା ଦୂର କରିବା ପାଇଁ ସେ ସତ୍ୟବତୀ ଭଳି ଗୋଟିଏ ଝିଅ ପାଇଗଲା । ସତ୍ୟବତୀ ବି ଖୁସିରେ ମାତି ଉଠିଲା । ତା ମୁହଁରୁ ଉଦାସୀନତାର କଳାମେଘ ଅପସରିଯାଇ ଖୁସିରେ ଝଲମଲ ହୋଇଉଠିଲା । ଦୁହେଁ ଏକତ୍ର ଘଣ୍ଟାଘଣ୍ଟା ଧରି ଗପିଲେ । ଖାରବେଳ ତା ନୂଆ ମା' କଥା କହିଲା । ବାବାଙ୍କ ବ୍ୟବସାୟ କଥା କହିଲା ।

ନୂଆ ମା'ଙ୍କ ଆଖିରେ ସପନମାନେ ଏବେ ବି ଘୁରୁଛନ୍ତି କାରଣ ଏଇଟା ତାଙ୍କର ସପନ ଦେଖିବାର ବୟସ । ମା ଅପେକ୍ଷା ବେଳେବେଳେ ସେ ଅଧିକ ସ୍ନେହ ଦେଉଛନ୍ତି ଖାରବେଳକୁ । ଖାରବେଳ କିନ୍ତୁ ଖୁସି ହୋଇ ପାରୁନି କାରଣ ମା'ଠୁ ଯେ ଅଧିକ ସ୍ନେହ ଦିଏ ସେ ଡାହାଣୀ ।

ବାବାଙ୍କ କଥା ଭାବିଲେ ଏ ସାରା ଦୁନିଆଁଟାର ଦୃଶ୍ୟ ଖାରବେଳକୁ ଖୁବ୍ ଭୟଙ୍କର ଦେଖାଯାଉଛି । ବିଶୃଙ୍ଖଳା ତାର ସ୍ଲୋଗାନରେ କମ୍ପୁଛି ମେଦିନୀ । ଯେତେ ସବୁ ଅସାମାଜିକ ବ୍ୟକ୍ତି ସବୁ ବାବାଙ୍କ ଭକ୍ତ । ସମସ୍ତଙ୍କ ଯିବା ଆସିବା ସମୟ ଘଡିରେ । ଏଇ ଦେଣା ନେଣା ବେଉସା କରି ଯାହା ସମୃଦ୍ଧି ହେଲାଣି ତାର ସୀମା ନାହିଁ । ସେଲ୍‌ସଟ୍ୟାକ୍‌ସବାଲା, ଏକ୍‌ସାଇଜ୍‌ବାଲା ଓ ପୋଲିସବାଲା ଆସୁଛନ୍ତି ଗମ୍ଭୀର ହୋଇ ଓ ଯାଉଛନ୍ତି ହସିହସି ।

ସବୁ କଳା ବ୍ୟବସାୟ ବାବାଙ୍କର । ସବୁ ଗତି ବ୍ୟବସାୟ ବାବାଙ୍କର ।

ଏବେ ଗୋଟେ ହୋଟେଲ ହୋଇଛି । ବଡିଆ ହୋଟେଲ । ସାତମହଲ ପରି ପ୍ରାସାଦ । ଯେଉଁଠି ଖୁନ୍ଦି ହୋଇଛନ୍ତି ବିଭିନ୍ନ ଦେଶର ରୂପବତୀ ଝିଅ-ମାନେ । ଗହଳି ଧମାଧମ୍ । କାରବାର ଘନଘୋର ।

ଏଠି ସୁଖାଦ୍ୟ ମିଳୁଛି । ପିଇବାକୁ ମିଳୁଛି । ବେଡ୍ ଅଛି ରହିବାକୁ । ଦେହ ଅଛି, ରୂପ ଅଛି, କାମନା ଅଛି ଏବଂ ଏହିସବୁର ଖାନ୍ତି ପାଇଁ ରୂପବତୀ ଝିଅମାନେ ଅଛନ୍ତି । ସହରୀ ସଭ୍ୟତାର ଅନ୍ତରାଳରେ ଅତ୍ୟନ୍ତ ସାମାଜିକ ଲୋକମାନେ ଏଠିକୁ ଆସନ୍ତି ଚିତ୍ତ ବିନୋଦନ ପାଇଁ । ବାବାଙ୍କର ଧନ ଦରକାର ।

ଗୋରୁକାଟି ମାଂସ ବିକି ଖୁଆଇ ଟଙ୍କା ରୋଜଗାର କରିବାର ଏଇ ରୁଗ୍‌ଣ ଓ ଅବାଂଛିତ ସଭ୍ୟତାଟାରେ ମଣିଷ କେବଳ ଉପାର୍ଜନର କ୍ଷମତାଟାକୁ ସମୟର ପଶାପାଲିରେ ରଖି ଗୋଟି ଗଡେଇ କୌଶଳର ଡାଲ ବିଂଚି ଦେହ ଓ ଦାହକୁ ଅକାତରେ ବିସର୍ଜ୍ଜନ କରୁଛି ।

ଏଇଥିପାଇଁ ଖାରବେଳର ମନଟା ଉଦାସ । ଏସବୁ କଥାଗୁଡାକ ଏପରି ଯେ ଏହା କାହାକୁ କହିଲେ କିଂବା ପ୍ରତିବାଦ କରିଦେଲେ ପାରିବାରିକ ରାମାୟଣ ପୁରା ଅଶୁଦ୍ଧ ହୋଇଯିବ । ଇଜ୍ଜତ ପଳେଇଯିବ । ମହତ ଅପହରଣ ହୋଇଯିବ, ମାତ୍ର ଖାରବେଳ ଅନୁଭବ କରି ପାରିଛି ଯେ ମଣିଷର ବୃଥା ଅହଙ୍କାର ତା ନିଜ ପାଇଁ ହେଲେ ବି ସମୟର ଏହା ହିଁ ମୂଳମନ୍ତ୍ର ।

ଏ ପୃଥିବୀ ଶସ୍ୟଶ୍ୟାମଳା । ବିଚିତ୍ର ବର୍ଣ୍ଣା ଓ ଛବିଳ ମାତ୍ର । ଏହି ମହିରେ ଯେଉଁ ମଣିଷମାନେ ଏବେ ବସବାସ କରୁଛନ୍ତି ସମସ୍ତେ ସାଧୁ ନାହାନ୍ତି । ମଣିଷପ୍ତର ମୂଳମାନ୍ଙ୍କୁ ଏମାନେ ଅବଜ୍ଞା ଆଡେଇ କରି କେବଳ ଅହଙ୍କାରରେ ମାତିଛନ୍ତି । ଏଥିପାଇଁ ସମ୍ପର୍କର ବ୍ୟବଧାନ ନାହିଁ,ଅନୁରାଗ ନାହିଁ, କର୍ତ୍ତବ୍ୟ ନାହିଁ, ମୋହ ନାହିଁ ।

ଏହାହିଁ ସଚରଚର ହେଉଛି । ଘଟୁଛି ଏବଂ ଘଟିବ । ଏହା ପ୍ରଳୟର ସ୍ୱର । ପ୍ରଳୟ ଏଠି ପଂକ୍ଷା ମେଲି ସବୁ ଗିଳି ଖାଉଛି ଆଉ ହାଃ ହାଃ ହୋଇ ହସୁଛି, ଯାହାକୁ ମଣିଷମାନେ କହୁଛନ୍ତି ସଭ୍ୟତା । ଆଧୁନିକ ସଭ୍ୟତା । ସମାଜ ଓ ସାମାଜିକତା । ନ୍ୟାୟ ଓ ସତ୍‌କର୍ମ ।

ଖାରବେଳ ଏଇଥିପାଇଁ କ୍ଷୁବ୍‌ଧ ଯେ ତା ବାବା ଓ ମା ସମସ୍ତେ ପ୍ରଳୟର ଝଡ଼ରେ ଏଠି ସେଠି ଓ ସବୁଠି । ସମସ୍ତେ ଆତ୍ମସୁଖରେ ମାତିଛନ୍ତି । ସମୟକୁ ପରଓ୍ୱା ନାହିଁ । ପାପକୁ ଭୟ ନାହିଁ । ବଞ୍ଚିବାର ଅଧିକାରକୁ ନେଇ ଏମାନେ ଚୌକଷ ସ୍ୱ ସ୍ୱ ମତଲବକୁ ଚରିତାର୍ଥ କରିବା ପାଇଁ ପାବତ୍ କର୍ମ ଅପକର୍ମ କଲେ ବି ଦୁଃଖ କରୁନାହାନ୍ତି । ଏମାନେ ଆତ୍ମାକୁ ଚିହ୍ନି ନାହାନ୍ତି ।

ମା' ମରିଗଲେ । ସେହି ମୃତ୍ୟୁ ହିଁ ଖାରବେଳକୁ ଚିହ୍ନେଇ ଦେଇଛି "ମୃତ୍ୟୁ ଅନିର୍ବାର୍ଯ୍ୟ" । ଏହି ଜନ୍ମ ଓ ମୃତ୍ୟୁର ପ୍ରଭେଦ ହିଁ ମଣିଷର ପରୀକ୍ଷା କ୍ଷେତ୍ର । ଆଗରେ ମହାପ୍ରଳୟ । ଏବେ ପଛରେ ଛାଇ ହୋଇ ଭ୍ରମୁଛି ମଣିଷ ପଛରେ ପଛରେ । ତେଣୁ ନିଜ ଛାଇକୁ ଚିହ୍ନିବା ପରମ ଧର୍ମ । ଏହା ହିଁ ନିର୍ବାଣ । ହଁ, ଖାରବେଳ ଏଇଥିପାଇଁ ମାପି ମାପି ପାଦ ପକେଉଛି । ଧକେଇ ଧକେଇ ନିଜ ଆତ୍ମାକୁ ଦେଖୁଛି । ଘନଘନ ପରୀକ୍ଷା କରୁଛି ପିଣ୍ଡରେ ପ୍ରାଣ ଅଛି କି ନାହିଁ ।

ନିଜ ଆଖିରେ ଅନେକ ବିଶୃଙ୍ଖଳିତ ଦୃଶ୍ୟ ଦେଖିଲା ପରେ ସେ ଅନୁଭବ କରୁଛି ଏ ପୃଥିବୀଟା ହିଁ ଭୋଗର ରାଇଜ । ଖାଅ, ପିଅ ଓ ମଉଜ କର । ଜୀବନ ଏଠି ଫୁଲର କୋମଳତାରେ ଗଢ଼ୁଛି । ଏଫୁଲ ସେଫୁଲ । ସବୁ ଫୁଲ ସୁନ୍ଦର ଦିଶୁଛି ବୋଲି ଯାହା ସୁନ୍ଦର ତାକୁ ଭୋଗକରିବାର ମନ୍ତ୍ର ଉଚ୍ଚାରିତ ଏଇ ପୃଥିବୀରେ ସତ୍ୟବତୀ ବି ହସୁଛି । ଭିନ୍ନ ଭଙ୍ଗୀରେ ଓ ଅପୂର୍ବ ଠାଣିରେ । ତା ଦେହ ଫୁଲ ପରି କୋମଳ ଓ ସୁନ୍ଦର । ତା ଛାତି ଭିତରେ ଯେଉଁ ଆତ୍ମାଟା ଅଛି ସେ କଣ କରୁଛି ? ଖାଉଛି ? ଖେଳୁଛି ? ଖଟପଟ ହଉଚି ?

ସତ୍ୟବତୀ ତା ନିଜକୁ ଦେଖିଛି ? ଚିହ୍ନିଛି ?

ତା ଛାଇର ଲମ୍ବ କ'ଣ ତା ଶରୀରର ଉଚ୍ଚତା ସହିତ ସମାନ । ଉଁ, ସତ୍ୟବତୀ ଏବେ ବି ତାକୁ ଦେଖୁଛି । ତା ଆଖିରେ ଖାରବେଳର ଛବି, ହଁ, ଖାରବେଳର ଦୁର୍ଦ୍ଦାନ୍ତ ରୂପ, ହାତର ଛୁରୀ । ଛୁରୀରେ ଲାଗିଛି ତାଜି ରକ୍ତ, ସତ୍ୟବତୀର କପାଳରେ ତା ଦେହର ରକ୍ତଦାଉ ଦାଉ ହୋଇ ଜଳୁଛି ।

ପଥରରେ ତିଆରି ସେଇ ଠାକୁରାଣୀ ଡିମା ଡିମା ଆଖି କରି ତାକୁ ଚାହିଁଛନ୍ତି । ଦେଖୁଛି ଠାକୁରାଣୀ, ଦେଖୁ । କଳିକାଳର ଏଇ ଠାକୁରାଣୀଗୁଡାକ ଏକବାର ଅଥର୍ବ ହୋଇଗଲେଣି ।

ସବୁଠି ତାଙ୍କର ବିଜେସ୍ଥଳୀରେ ସବୁ ଦୁଃର୍ଘଟଣା । ହଣାହଣି, ଚୋରାଚୋରୀ ପିଆପିଇ, ଧର୍ଷଣ ଓ ଡକେଇତି । ଏମାନେ ପ୍ରଳୟ ସମୁଦ୍ରରେ ଗାଧୋଇ ନିଶ୍ଚୟ ମହାପ୍ରଳୟ ପାଇଁ ସଜବାଜ ହୋଇଅଛନ୍ତି ।

ଖାରବେଳ ଛୁରୀଟାକୁ ଚାହିଁଲା । ହଁ ଏ ଛୁରୀ ଏ ସହରରେ ଅନେକ ବିକ୍ରି ହେଉଛି । କ'ଣ ଏସବୁ ହଉଛି ବୋଲି ଖାରବେଳ ଦିନେ ଭାବୁଥିଲା ମାତ୍ର ଆଜି ଜାଣିଲା ଛୁରୀ ହିଁ ସାହସିକତାର ପ୍ରଥମ ଅସ୍ତ୍ର ।

ମନ୍ଦିରର ପୂଜକ ସେମାନଙ୍କୁ ଆସି ଜଳଜଳ କରି ଚାହିଁଲା । ସତ୍ୟବତୀ ତାକୁ ମୁଣ୍ଡିଆ ମାରିଲା ।

ଖାରବେଳ କିନ୍ତୁ ପୂଜାରୀକୁ ଦେଖି ଚମକି ଉଠିଲା । ଚିହ୍ନାଚିହ୍ନା ମୁହଁଟାତ ପୂଜକର, କିଏ ? ଖରବେଳ ଯାଦକଲା ।

ଇଏବି ବାବାଙ୍କର ଭକ୍ତ ଯିଏ ପ୍ରତ୍ୟହଃ ଘଡିରେ ଯାଇ ବାବାଙ୍କ ସଂଗେ ଦେଖାହୁଏ । ଏଇଟା ପୂଜକ ନୁହେଁ ପାକିଟେ, ପକେଟମାର, ଉଚକ୍କ ।

ଯେଉଁମାନେ ଏଠାକୁ ଠାକୁରାଣୀ ବନ୍ଦନା କରିବାକୁ ଆସନ୍ତି ଏହି ପୂଜକ ତାଙ୍କର ପକେଟ ମାରେ । ସ୍ତ୍ରୀମାନଙ୍କର ଅଳଙ୍କାର ଝମ୍ପିନିଏ । ସବୁ ଅଳଙ୍କାର ରଖି ବାବା ଟଙ୍କା ଦିଅନ୍ତି, ଖାରବେଳର ହାତ ମୁଠା ମୁଠା ହୋଇଗଲାଣି । ସେ ଇଚ୍ଛା କଲା ଛୁରୀଟା ଚଳେଇ ଦବ କିନ୍ତୁ କେତେଟାଙ୍କୁ ଖତମ କରିବ ? ସେ ତା ବାବାଙ୍କୁ ଖତମ କରି ପାରିବ ?

ତା ନୂଆ ମାଙ୍କ ସ୍ୱେଚ୍ଛାଚାରିତାକୁ ରୋକି ପାରିବ ?

କଲେଜ ଟୋକାଙ୍କ ଉଦ୍ଧାମତାକୁ ବାଂଧ କରିପାରିବ ?

ସେଇଠି ଛୁରୀଟା ଫିଙ୍ଗି ଦେଲା ଖାରବେଳ । ବଡ ବଡ ପାହୁଣ୍ଡ ପକେଇ ଗ୍ଲାଲିଲା । ସତ୍ୟବତୀ ତା ପଛରେ ଆସିଲା ।

ସେ ମନେ ମନେ ଭାବିଲା, ପୂଜକ ଛୁରୀଟା ନିଶ୍ଚୟ ରଖିବ ଏବଂ ଦରକାର ହେଲେ ତା ଧାରରେ ଲଗେଇ ଦବ ।

ଖାରବେଳ ପଛକୁ ଗ୍ଲହିଁଲା ।

ସତ୍ୟବତୀ ଆସୁଛି ନାଚି ନାଚି, ହସି ହସି ।

ଖାରବେଳ ସାମାନ୍ୟ ବାଳକ ହୋଇ ଗଲା ସତ୍ୟବତୀ ସହିତ । ମିଠା ମିଠା ଗପ, ସେମାନ ବିବାହ କରିବେ । ଏକ ଶଯ୍ୟାରେ ଶୟନ କରି ଅନେକ ସପନ ଦେଖିବେ । ତାପରେ କଣ ହେବ ? ଦେ ଏନ୍ଡ ଏଣ୍ଡ୍ ଦେମ୍ ସେଲଭ୍ସ୍ ନାରୀ ପୁରୁଷର ନିର୍ବୀକାରରେ ଖାରବେଳ ଓ ସତ୍ୟବତୀ ମଂଦିରର ମୁଖ ଶାଳାରେ ଥିବା ନଗ୍ନ ପଥର ମୁର୍ତ୍ତୀପରି ଲିପ୍ତ ରହି କେବଳ ସୃଷ୍ଟି ପାଇଁ ବ୍ୟାକୁଳ ହେବେ' ସଂଗମ ଭୋଗ ପାଇ ନା ସଂଗମ ସୃଷ୍ଟି ପାଇଁ ?

ସୃଷ୍ଟି ଯଦି ପୂର୍ଣ୍ଣ ହୁଏ ଭୋଗ କ'ଣ ହେବ ?

ପାପ ।

ପାପ କ'ଣ ପ୍ରଳୟର ମନ୍ତ୍ର ।

ଏହା ଯଦି ସତ୍ୟ ହେବେ; ମହା ପ୍ରଳୟ କେବେ ?

ନା, ସବୁ ମିଥ୍ୟା । ମିଛ ।

ନା............ଚିତ୍କାର କଲା ଖାରବେଳ ।

ସତ୍ୟବତୀ ଛଟପଟ ହେଲା ।

ଖାରବେଳ ତାର ତଣ୍ଟିଟାକୁ ଚିପି ଧରିଛି । ତା ଆଖି ଦୁଇଟା ଜଳୁଛି । ସେ ଥରୁଛି, ସତ୍ୟବତୀର ନିଶ୍ୱାସ ବନ୍ଦ ହୋଇଯିବା ସେ ଅନୁଭବ କଲା କ୍ରମେ ସେ ଦୁର୍ବଳ ହୋଇପଡୁଛି । ହଠାତ୍ ସେ ଖାରବେଳର ହାତ ଦୁଇଟାକୁ ଧରି ଛଟପଟ ହେଲା, ଖାରବେଳର ହୋସ ଆସିଲା ଏବଂ ସେ ଏକ ଲୟରେ

ସତ୍ୟବତୀକୁ ଗ୍ରହିଁଲା, ଗ୍ରହିଁଗ୍ରହିଁ କାନ୍ଦି ପକାଇଲା । ସେ ଖୁବ୍ ଛୋଟ ହୋଇ-ଗଲା । ସତ୍ୟବତୀ ତା ଲୁହ ପୋଛି ଦେଉ ଦେଉ କହିଲା—"ଏହାହିଁ ପ୍ରଣୟର ମଧୁରତା, ଆସ" ।

ସେମାନେ ଗଲେ.... ।

ଖାରବେଳ ନିଜକୁ ବହୁତ ଗାଳି ଦେଲା, ଅଭିଶାପ ଦେଲା ।

ଏହି ଉଦାସୀନତାର ସୁଯୋଗ ନେଇ ସତ୍ୟବତୀ ତାକୁ ଏକ ଗଭୀର ଚୁମା ଦେଇ ଦେଲା ।

ତା ପରେ ସେ ପଳେଇଲା ବଢ଼ିପାଣି ପରି ।

ଖାରବେଳ ହାତ ମାରି ଦେଖିଲା ତା ଗାଲକୁ ସତ୍ୟବତୀ ତା ଟିକି ଟିକି ଧୋବଫରଫର ଦାନ୍ତରେ ଦଂଶି ଦେଇ ଓଦା କରି ଦେଇଛି ।

ସେ ଫେରିଲା ।

ସତ୍ୟବତୀ ହଷ୍ଟେଲକୁ ପଳେଇଲା ।

ସେ ଘରକୁ ଗଲା । ଗେଟ୍‌ରେ ତାଲା ପଡ଼ିଥିଲା । ଚଢ଼ିଲା ଖାରବେଳ, ଏହାକୁ କହନ୍ତି ଘର ଯେଉଁଠି ଦିନରେ ଗେଟ୍‌ରେ ତାଲା ପଡ଼େ ଏବଂ ଏହି ଘରେ ବାସ କରୁଥିବା ମଣିଷଟିଏ ଗେଟ୍ ଡେଇଁ ଭିତରକୁ ଆସେ । ଭଲଘର ଏହାକୁ କୁହନ୍ତି ।

ଏ ଘରେ ଝିଅ ନାହାନ୍ତି । ଏଠି ବୋତଲ ଅଛି । ନୂଆ ମା ଅଛନ୍ତି ଯିଏ କିଛି କିଛି ପିଇ ଅସଂଯତ କଥା କୁହନ୍ତି । ପୁଅକୁ ଭିଆର ବୋଲି ଡାକନ୍ତି ।

ହଠାତ୍ ଖାରବେଳ ଜାଣିଲା ମା' ବି ସେହି ସ୍ୱପ୍ନରେ ମାତିଛନ୍ତି ଯେଉଁ ଛବି ସବୁ ଦେଉଳର ମୁଖଶାଳାରେ ଅଛି ।

ସେହି କୋଠରୀ ମଧ୍ୟରେ ।

ନୂଆ ମା ଏବଂ ଅନ୍ୟ ଜଣେ ପୁରୁଷ ।

କିଏ ସେହି ପୁରୁଷ ।

କିଏ ?

ମଣିଷ ଜଣେ । ସଂଗମ ତା ପାଇଁ ଭୋଗର ଏକ ସାମଗ୍ରୀ ।

ଖାରବେଳ ଚିତ୍କାର କଲା ।

ସେହି ପୁରୁଷଟାକୁ ଟାଣି ଆଣି ନିର୍ଘୁମ ପିଟିଲା ।

ନୂଆ ମା' ନିର୍ବିକାର । ପୁଣି ସେ ବୋତଲ ଠିପି ଖୋଲି ମୁହଁରେ ଲଗେଇଲେ ।

ଖାରବେଳ ହସିଲା । ହସିଲା ହୋ ହୋ ହୋଇ ।

ପଳେଇଲା ବାବନା ଭୁତଙ୍କ ପରି ।

ସେମାନେ ହସୁଥିଲେ, ଏଣୁ ସେ ହସିଲା । କାହିଁକି ହସିଲା ସେ ? ହସିଲା କେବଳ ସେହିମାନଙ୍କୁ ଅନୁସରିତ କରି । କଲେଜରେ ଟୋକାମାନେ ସେମିତି ଉଦ୍ଧତ ହୋଇ ମାତୁଛନ୍ତି । ବାବାଙ୍କ ପାଖକୁ ରାତିରେ ସମସ୍ତେ ଆସୁଛନ୍ତି ଯାଉଛନ୍ତି । ଏହା ତାଙ୍କର ବିଜ୍‌ନେସ୍ । ମା' ପିଉଛନ୍ତି ଏବଂ ତାଙ୍କର ପୁରୁଷ ବଂଧୁ ତାଙ୍କ ଚଟାଣରେ ଗଡ଼ୁଛନ୍ତି ।

ଯିଏ ଯା ସୁଖରେ ମାତିଛନ୍ତି ।

ଖାରବେଳ ପବନ ବେଗରେ ଧାଇଁଲା, ନଈନାଳ ଡେଇଁଲା, ବଣ ବିଲ ପାରିହେଲା । ରାଜପଥ ଓ ଗଳି ପଥରେ ଘୁରିଲା । ଗାଁ ଗୋହିରୀରେ ବୁଲି-ବୁଲି ଖୋଜିଲା । ଖୋଜି ଖୋଜି ନୟାନ୍ତ ହେଲା ।

ସେ ଅନୁଭବ କଲା ପ୍ରଳୟ ପରେ ମହାପ୍ରଳୟ ।

ସୃଷ୍ଟି ନିଶ୍ଚୟ ଘୂରିବ । ତେବେ ଏଥିରୁ ନିଷ୍କୃତି ପାଇବା ପାଇଁ ମଣିଷର ଧର୍ଯ୍ୟ କେବଳ ନିଜକୁ ଭଲ ପାଇବା । ନିଜ ଛାଇକୁ ପ୍ରେମ କରିବା ।

ଏ ପୃଥିବୀରେ ଆପଣାର ହୋଇ କେହିନାହିଁ । ସମସ୍ତେ ସମସ୍ତଙ୍କର ପର । ସତ୍ୟବତୀ ଖାରବେଳର କେହିନୁହେଁ । ତା କଥା ଭାବିବା ପାପ କାରଣ ସେ ନୂଆ ମାଙ୍କ ପାନଭଉଣୀ ।

ଆଖିରୁ ଲୁହ ପୋଛି ସାରା ପୃଥିବୀଟାକୁ ନିଜ ଆଖିରେ ଚାହିଁଲା ଖାରବେଳ ପ୍ରଳୟ ମାତିଛି' ମହା ପ୍ରଳୟ ଆସିବାକୁ ପ୍ରସ୍ତୁତ ହେଉଛି ।

ଖାରବେଳ ଏହି ଦୃଶ୍ୟ ଦେଖି କିଳି କାଳିଆ ହୋଇ ସେହି ଦିଗ୍‌ବଳୟ ଅନ୍ତକୁ ଚାହିଁଲା । ଅନ୍ତତଃ ମହାପ୍ରଳୟ ଆସିବା ପୂର୍ବରୁ ସେ ସେଠି ପହଞ୍ଚି ପ୍ରଥମେ ନିଜକୁ ଭଲ ପାଇ ଶିଖିବ ।

ତାଡା ପ୍ରକାଶନୀ

ଖୋରଧା—୭୫୨୦୫୫

—•—

ପ୍ରଫୁଲ୍ଲ କୁମାର ତ୍ରିପାଠୀ

# ହଂସ ଓ ସାହସ

ଖଂଜା-ହଂସ ଖସିଆସେ ବୃକ୍ଷରୁ ଯେପରି
ପତ୍ରମାନେ ଖସୁଥାନ୍ତି ଶୀତ ସକାଳରେ
ସେପ୍‌ଟେମ୍ବର ଆକାଶରୁ ଉଲ୍‌କାଟିଏ ଭଳି
ପୁରୁଣା କୋଠାର କାନ୍ଥ ଭଙ୍ଗାଇଟା ପରି
ନାରୀର ମୁଖଶ୍ରୀ ଛାଡ଼ି ଖଂଜା-ହଂସ ମାନେ
ଖସୁଛନ୍ତି, ମିଶୁଛନ୍ତି ବିଷାକ୍ତ ପବନେ

ଏ କେଉଁ ଧାତ୍ରିର ଲୋକ ?
କି ଧର୍ମ ତାହାର ?
ସେ କିଆଁ ବଢ଼ାଏ ହାତ ଅତି ଉଚ୍ଚ ଡାଳର ଫଳକୁ
ଯେ ସତେ ଛୁଇଁବ ଚନ୍ଦ୍ର, ସେ ସତେ ଲଂଘିବ ଗିରି,
ସେ ସତେ କରିବ ଚୂଳୁ ସାତଟା ସମୁଦ୍ର ?
ପ୍ରତେ ହୁଏନାହିଁ ସତ, ଅବିଶ୍ୱାସ କରିବି କିପରି ?
ଯେତେଟା ଚଞ୍ଚଳ, ସେତେ ଭଲ
ପବନରେ ପହଁରିବେ ଧାଡ଼ି ଧାଡ଼ି ହଂସ
ଏଥିଲାଗି ଲୋଡ଼ା କିନ୍ତୁ ଅଦ୍‌ଭୁତ ସାହସ

ରତିଏ ନିଖୋଜ ରହି ସକାଳକୁ କ୍ଲାନ୍ତିରେ ଢୋଲାନ୍ତ
ଗାଉଁଲି ଓଠରେ କିଏ ଦେଇଯାଏ ବେଦମ୍ ଚୁମ୍ବନ
ଓ ଶରୀରରେ ନିଷ୍କ୍ରିୟତା ଅସ୍ତବ୍ୟସ୍ତ ସବୁ ଚିହ୍ନାଙ୍କୁତା
କଳଙ୍କି ଲଗା ଦେହକୁ ପାଲିଶ୍ କରୁଛି କିଏ
ସକାଳର ପତିଆରେ ବିନ୍ଦୁ ବିନ୍ଦୁ ଶୀତ
ଓ ମଞ୍ଜୀ ନିହାତି ସମ୍ଭବ
ପ୍ରସ୍ଫୁଟିତ ଶବରେ ଭୁଲିବା ସହଜ ପଢ଼ିଏ ନୁହଁଇ କିଛି
ବିସ୍ମିତ ତା ଆଖିର ପୁଅକେ ଅନ୍ଧାରରେ ଖୋଜିଥିଲା

ଦେହଯାକ ବୋଳି ହୋଇଥିଲା ଅନେକ କଳଙ୍କ
ଯାହା ଚନ୍ଦ୍ରି ମଂଜିଠାରୁ ବେଶି କଳା
ସେଠାରେ ନଥିଲା କିଛି, କେବଳ ଘୂର୍ଣ୍ଣନ
ଅଠାଳିଆ ଓଠ ଏବଂ ସମ୍ଭବତଃ ନିଦେଇବା ଶବ
ଅନେକ ଉଚ୍ଚକୁ ଉଠି ଖୁବ୍ ତଳେ ଖସିବା ପରେ ବି
ଯେ ଭଳିକି ନିଶ୍ଚିନ୍ତରେ ଡେଇଁବୁଲେ ଶଂଖୀ ବିଲେଇଟି

ଅପାତ୍ରରେ ଟେକିଦେଲା ଏତେ ବଡ ଦାନ
ଚେତନାର ଦୌଡ଼ ଡିଙ୍ଗି, ନାରୀର କୋଳରେ ଶୋଇ
ଧିମେଇଛ କିଆଁ ତେବେ ନକ୍ସପାର ଅନ୍ଧକାର
ଅନ୍ଧାରରେ ଶଂଖୀ ବିଲେଇଟି
କାହାକୁ ସଂପୃକ୍ତେ କିମ୍ବା ଅନ୍ୟ କିଛି ଖୋଜେ
ତାହାବି ହୁଏନା ବୁଝି ଯେହେତୁ ଏ ଦ୍ୱିତୀୟ ଲଗ୍ନରେ
ଅଶୁଭ ସଙ୍କେତ ତଳେ ଆରମ୍ଭ ପୂର୍ବରୁ

ସମସ୍ତ ସଞ୍ଚୟ ତାର ବୃଥାହେଲା
ଅପରୂପା ନାରୀଟିର ସାହାସୀ ହସରେ
ସେ କିଁପା ଭାଙ୍ଗିବ ତେବେ ମହୁମାଛି-ସୌଧ ନେଇ
କାହାକୁ ଡାକିବ ଆଉ
ସମସ୍ତେ ତ ଅପରୂପା ନାରୀ

ଏତେବଡ ମିଛକଥା ହଜମ କରିଛ ତୁମେ ?
କେତେ ସହଜରେ ଆହା
ଗଡ଼ିଗଲା ଲୁଣିଲୁହ ନୀଳନୟନରୁ
ଯଥା ଏକ ପାହାଡ଼ୀ ଝରଣା
ଡେଇଁ ଡେଇଁ, ଫୁଲି ଫୁଲି, ନାଚି ନାଚି, ଗୀତ ଗାଇ ଗାଇ
ଅଜସ୍ର ସ୍ୱପନ ନେଇ ମିଶିଯାଏ ଘଂଚ ଅରଣ୍ୟରେ
ତୁଳନା କରି ବା କଣ ଲାଭ ଆଉ
ନିଭିଗଲା ସମସ୍ତ ଆଲୁଅ
ଏତେ ବଡ ମିଛକଥା ହଜମ କରିଛ ତୁମେ,
ସେ କିପରି ବିଶ୍ୱାସ କରିବ ?

ଆଦିବାସୀ ତରୁଣୀର ଚିତାକୁଟା ଦୁଇଟି ବାହୁରେ
କି ଶକ୍ତି ରହିଛି ଯାହା ମୂର୍ଚ୍ଛା କରିପାରେ
ତୁମର ମର୍ମର ବାହୁ, ଲୋମହୀନ ଚିକ୍‌କଣ ବାହୁରେ
ସେ କିପରି ଭୁଲିଯିବ ଶହ ଶହ ସ୍ୱପ୍ନ ?

କିଏ ତାର ଅନ୍ତର୍ନାଡ଼ୀ ଟାଣିନିଏ
ଓ ଅନେକ ଚିତ୍କାର କରନ୍ତି
ସହରର କାନ୍ଥେ କାନ୍ଥେ ଏ କାହାର ମୁହଁ
ଖସିପଡ଼େ, ନିଭିଯାଏ, ପୁଣି ଜଳିପଡ଼େ
ଆଜି ସେ ପ୍ରଗଳ୍‌ଭ ଭଳି, ବିକଳ ପୁରୁଷ ଭଳି କହିପାରେ
ଭୁଲିଯାଅ ଭୁଲିଯାଅ
ଅନେକ ପାର୍ଥକ୍ୟ ଅଛି
ଦିନ ଏବଂ ରାତିର ମଧ୍ୟରେ
ହସ ଏବଂ ଯାତନା ମଧ୍ୟରେ



୩·ଆର୍·୬, ବି. ଜେ. ବି. କଲୋନି
ଭୁବନେଶ୍ୱର

—■—

ରବି ପଟ୍ଟନାୟକ

# ନିଜସ୍ୱ ଇଲାକା

ସଂଘର୍ଷ ଅନିର୍ବାର୍ଯ୍ୟ ।

ଆଉ ସଂଘର୍ଷ ହେଲେ କ୍ଷତବିକ୍ଷତ ଓ ରକ୍ତାକ୍ତ ଅବିଶ୍ୟମ୍ଭାବୀ ।

ଏଇ ଅବିଶ୍ୟମ୍ଭାବୀ ପରିଣତ ନେଇ ଜୀବନର ଆରମ୍ଭ ଓ ଶେଷ । ଆଜି ପଚିଶବର୍ଷର ବିବାହିତ ଜୀବନ ପରେ ମୋର ବିବାହ ବିଚ୍ଛେଦ ।

ପ୍ରତ୍ୟେକ ମଣିଷର ଏକ ନିଜସ୍ୱ ଇଲାକ ରହିଛି । ସେଇ ଇଲାକାର ସେ ଏକଛତ୍ରାଧିପତି ଅଧୀଶ୍ୱର । ସେ ଭିତରକୁ କେବଳ ତା ଛଡ଼ା କାହାରି ପ୍ରବେଶାଧିକାର ନାହିଁ । ଭାଇ ବନ୍ଧୁ, ପିତା ମାତା, ସ୍ତ୍ରୀ ପ୍ରେମିକା, ପ୍ରେମିକ—କାହାରି ସେ ଭିତରକୁ ପ୍ରବେଶର ଅଧିକାର ନାହିଁ । ସେଇ ନିଷିଦ୍ଧ ଇଲାକାର କଞ୍ଚିକାଠି କେବଳ ସେଇ ବ୍ୟକ୍ତିଟିର । ପୁଣି 'କଞ୍ଚିକାଠି'ଟିକୁ ମଧ୍ୟ ସେ ନିଜ ଇଚ୍ଛା ଅନୁସାରେ ବ୍ୟବହାର କରିପାରେ ନାହିଁ । କଞ୍ଚିକାଠିଟି ତା ପାଖକୁ ଆସିଯାଏ ନିଜର ଅଜ୍ଞାତରେ ଓ ସେ ପଶିଯାଏ ସେଇ ନିଷିଦ୍ଧ ଇଲକା ଭିତରକୁ ନିଜର ଅଜ୍ଞାତସାରରେ । ସେଇ ଇଲକା ଭିତରେ ସେ ନିଜର ଇଚ୍ଛା ଅନୁଯାୟୀ ପ୍ରାସାଦ ଗଢ଼େ, ଉପବନ ତିଆରି କରେ । ତାର ଆକାଶ, ତାର ପୃଥିବୀ, ତାର ଗଛବୃଛ, ଜୀବଜନ୍ତୁ ମଣିଷ ସବୁ ନିଜ ଇଚ୍ଛାରେ ଗଢେ । ସେମାନଙ୍କ ଭିତରେ ସେ ବିଚରଣ କରେ—ଏକ ଅଦ୍ଭୁତ ଆନନ୍ଦରେ ବିହ୍ୱଳ ହୋଇଯାଏ, ନିଜର ସୃଷ୍ଟିରେ ନିଜେ ବିଭୋର ରହି । ତା ଭିତରେ ସେ କେତେ ସମୟ ରହିବ ତା ବି ତାର ନିଜ ଆୟତ୍ତରେ ନାହିଁ । କେତେବେଳେ ହଠାତ୍ କୌଣସି ମୁହୂର୍ତ୍ତରେ ସେ ତାର ଇଲକା ଭିତରୁ ନିର୍ବାସିତ ହୋଇଯାଏ ଏକ ଅଜଣା ଶକ୍ତିର ନିର୍ଦ୍ଦେଶରେ ଓ ଇଲକାର ଗେଟ୍ ବନ୍ଦ ହୋଇଯାଏ—ତାଲା ପଡ଼ିଯାଏ କଞ୍ଚିକାଠି ପୁଣି ହଜିଯାଏ । ନିଷିଦ୍ଧ ଇଲକା ତା ପାଇଁ ବି ହୋଇଯାଏ ଏକ ପ୍ରହେଳିକା ।

ଏହି ନିଷିଦ୍ଧ ଇଲାକ ପ୍ରତ୍ୟେକ ମଣିଷର ଚତୁର୍ଥ ଡାଇମେନ୍ସନ୍ ଜାଗ୍ରତ, ସ୍ୱପ୍ନ ଓ ସୁଷୁପ୍ତି ପରର ତୃତୀୟ ଅବସ୍ଥାପରି । ସବୁ ଅବସ୍ଥା ସମୟ ଓ ଶୂନ୍ୟତା

ଭିତରେ ଏକ ସମତଳରେ ଅବସ୍ଥିତ । କିନ୍ତୁ ଗୋଟିଏ ଅବସ୍ଥାରୁ ଅନ୍ୟ ଅବସ୍ଥାକୁ ପଟାନ୍ତର ହେଲେ ନିଶ୍ଚିତ ଭାବରେ ଏକ ସଂଘାତର ସୃଷ୍ଟି ହୁଏ । କେତେବେଳେ ଦୈହିକ ସ୍ତରରେ । କେତେବେଳେ ସୂକ୍ଷ୍ମ ଚେତନାରେ ।

ଏହି ସ୍ତରେଟି ସମାନ୍ତରାଳ ମଣ୍ଡଳ ଭିତରେ ମଣିଷ ବୁଲୁଛି—କେତେ-ବେଳେ କୋଉ ମଣ୍ଡଳରେ ତାର ଅବସ୍ଥିତି ହେବ ସେ ନିଜେ ବି ଜାଣେନା । ଏଇ ମଣ୍ଡଳ ଅତିକ୍ରମଣର ଧକ୍‌କା ସମସ୍ତେ ଏକ ଭାବରେ ଅନୁଭବ କରି ପାରନ୍ତି ନାହିଁ ବା ସହ୍ୟ କରି ପାରନ୍ତି ନାହିଁ । କେବଳ ବ୍ୟକ୍ତିଗତ ଭାବରେ ଅବସ୍ଥାର ପରିବର୍ତ୍ତନର ଇଚ୍ଛା ନୁହେଁ—ସେହି ଅବସ୍ଥା ପରିବର୍ତ୍ତନ ପରେ ଅପର ଏକ ବ୍ୟକ୍ତିର 'ଇଲାକାର ଅବସ୍ଥା ସହିତ ସଂଘର୍ଷର ଧକ୍‌କା ।

ଅନ୍ତତଃ ମୁଁ ପାରିନି ।

ରୀନୁ ପାରିନି ।

ଜୀବନର ଅନୁଭୂତିରୁ ମୁଁ ବୁଝିପାରୁଛି ବୋଧହୁଏ କେହି ପାରନ୍ତି ନାହିଁ । ସମସ୍ତେ ପାଲିସ୍ କରନ୍ତି । ବୁଝାମଣା କମ୍ପ୍ରୋମାଇଜ୍ କରି ଜୀବନକୁ ବୋହି ନିଅନ୍ତି ଜୀବନର ବାଟ ସରିବା ପର୍ଯ୍ୟନ୍ତ ।

ଜାଗ୍ରତରୁ ସ୍ୱପ୍ନ, ସ୍ୱପ୍ନରୁ ସୁଷୁପ୍ତି, ସୁଷୁପ୍ତିରୁ ଜାଗ୍ରତ ସବୁ ଅବସ୍ଥା ଯାନ୍ତ୍ରିକ ଭାବରେ ଘଟିଯାଏ । ଗୋଟିଏ ଗୋଟିଏ ଅବସ୍ଥାର ପ୍ରଭାବ କେବଳ କ୍ଷଣସ୍ଥାୟୀ ହୋଇ ରହେ । ତା ପରେ ନୂତନ ଅବସ୍ଥା ଆରମ୍ଭ ହୁଏ । ସଂଘର୍ଷ ଅତି ସାମାନ୍ୟ । କିନ୍ତୁ ସେଇ ନିର୍ଦ୍ଦିଷ୍ଟ ଇଲାକାରୁ ହଠାତ୍ କରି ଓହ୍ଲେଇ ପଡ଼ିବାର ଧକ୍‌କା ସବୁଠାରୁ ଅଧିକ । ସେଇ ଆକସ୍ମିକ ପତନ'ର ଶକ୍ ଅନେକେ ସମ୍ଭାଳି ପାରନ୍ତି ନାହିଁ । ସେଇ ମୁହୂର୍ତ୍ତରେ ହିଁ ପାଗଳ ହୋଇଯାଆନ୍ତି ନ ହେଲେ ହାର୍ଟଫେଲ କରି ମୃତ୍ୟୁବରଣ କରିନିଅନ୍ତି । କିନ୍ତୁ ଅନେକଙ୍କ ଜୀବନରେ ଏଇ ଏଇ ପତନର ଧକ୍‌କା ବିଳମ୍ବିତ ହୁଏ । ଲୁଣି ହାଓ୍ୱାରେ ଝରକାର ଲୁହା ରେଲିଂ ଖାଇଗଲା ପରି । ଘୁଣଖିଆ କାଠ ପରି । ଆକସ୍ମିକ ଭାବରେ ପୁରା ମଣିଷଟିଏ ଠକ୍ କରି ଭାଙ୍ଗିପଡେ । ଦେଖଣାହାରୀଏ ଆଶ୍ଚର୍ଯ୍ୟ ହୁଅନ୍ତି । ଝଡ଼-ନାହିଁ ତୋଫାନ ନାହିଁ ସିଧା ସଳଖ ଶକ୍ତ ଗଛଟା ଭାଙ୍ଗି ପଡ଼ିଲା କେମିତି ?

ମୋର ଓ ରୀନାର ଦୀର୍ଘ ପଚିଶ ବର୍ଷର ବିବାହିତ ଜୀବନ ସେମିତି ବିଚ୍ଛେଦ ହୋଇଗଲା ଅକସ୍ମାତ୍ ଭାବରେ ।

ମୁଁ ମାନୁଛି ସବୁ ମଣିଷ ଜୀବନରେ ଏମିତି ଘଟେନା । ଅଧିକାଂଶ ମଣିଷ ଯାନ୍ତ୍ରିକ ମଣିଷ । ସେମାନେ ତାଙ୍କର ଜାଗ୍ରତ ଅବସ୍ଥା ନେଇ ଏତେ ବ୍ୟସ୍ତ ଯେ ସେଇ 'ନିଷିଦ୍ଧ ଇଲାକା'ର ଖବର ସେମାନେ ରଖି ପାରନ୍ତି ନାହିଁ । ନିଷିଦ୍ଧ ଇଲାକାର ·ଅଲୌକିକ ସୌନ୍ଦର୍ଯ୍ୟ, ତାର ଅଫୁରନ୍ତ ସ୍ୱାଧୀନତା, ତାର ଅହେତୁକୀ ଆନନ୍ଦର ସ୍ପର୍ଶ ତାଙ୍କର ସ୍ଥୂଳ ଜୀବନକୁ ସ୍ପର୍ଶ କରେ ନାହିଁ । ମଣିଷ ସମାଜ ଭିତରୁ ଗୋଟାଏ କ୍ଷୁଦ୍ରାତ୍‌କ୍ଷୁଦ୍ର ଅଂଶ, ଲକ୍ଷକରୁ ଗୋଟିଏ ଯେ ଏଇ ଆନନ୍ଦର ସ୍ପର୍ଶକୁ କାଣିଚାଏ ଅନୁଭବ କରିପାରେ । ସେଇ ଅନୁଭବ ଟିକକହିଁ ତାକୁ ବାରମ୍ବାର ଟାଣି ନେଇଯାଏ ତାର ଅଜ୍ଞାତସାରରେ ସେଇ ନିଷିଦ୍ଧ ଇଲାକା ଭିତରକୁ, ସେଇ ଅହେତୁକୀ ଆନନ୍ଦର ଆସ୍ୱାଦ କରିବାକୁ । ମୋର ମନେହୁଏ ସୃଷ୍ଟିର ଯେତେ ଶ୍ରେଷ୍ଠ କବି, ଲେଖକ, ମନୀଷୀ, ସାଧୁ, ସନ୍ଥ, ଶିଳ୍ପୀ ସମସ୍ତେ ଏଇ ନିଷିଦ୍ଧ ତୀର୍ଥର ପେରନ୍ତା ଯାତ୍ରୀ ।

ମୋର ଓ ରାନୁର ସେଇ 'ନିଷିଦ୍ଧ ଇଲାକା' ଭିତରକୁ ଗତିଥିଲା ଅବାରିତ । ସେ ତାର ନିଜସ୍ୱ ଇଲାକାର ପରିଧି ଭିତରେ—ମୁଁ ମୋର ଇଲାକାର ପରିଧି ଭିତରେ । ତାରି ରାଜ୍ୟରେ ସେ ସାମ୍ରାଜ୍ଞୀ—ମୋର ସେଥିରେ ପ୍ରବେଶର ଅଧିକାର ନାହିଁ । ମୋ ରାଜ୍ୟରେ ତାର ପ୍ରବେଶର ଅଧିକାର ନାହିଁ—ସେଥିରେ ମୁଁ କେବଳ ମୁଁ ହିଁ ସମ୍ରାଟ୍ ।

ଯେତେବେଳେ ତାର ସଂପୂର୍ଣ୍ଣ ସ୍ୱାଧୀନ ଆତ୍ମାଟି ସେଇ ଆଲୋକିତ ସାମ୍ରାଜ୍ୟରୁ ହଠାତ୍ ଫେରି ଆସି ଦେଖେ—ତ ଆଗରେ ତାରି ଇଚ୍ଛାରେ ଗଠିତ ଜ୍ୟୋତିର୍ମୟ, ପ୍ରେମିକ ପୁରୁଷଟି ବଦଳରେ—ଏକ ପାଞ୍ଚଫୁଟ ଛଅଇଞ୍ଚର କଳା, ଦେହର ମଧ୍ୟ ଭାଗରେ ଅତୀବ ଗୋଲାକୃତ ସଂପୂର୍ଣ୍ଣ; ମେଦ ବହୁଳ ବାଙ୍ଗର, ମୁଣ୍ଡ ଉପରକୁ 'ଅଧା ଚନ୍ଦା ହୋଇପାଇଥିବା ପୁରୁଷଟିକୁ—ଏକ ଅଦ୍ଭୁତ ପ୍ରତିକ୍ରିୟାରେ ତାର ଦେହ ମନ ବିଷାଦିତ ହୋଇଯାଏ । ତୀବ୍ର ଘୃଣା, ବିରକ୍ତିରେ ଦେହ ମନ ସଂକୁଚିତ ହୋଇଯାଏ । ସେ ଆଖି ବୁଜିଦିଏ ଏକ ଦୁର୍ବାର ଭୟରେ ।

ମୁଁ ଯେତେବେଳେ ତାକୁ ଏମିତି ଅବସ୍ଥାରେ ଦେଖେ ଅବାକ୍ ହୋଇଯାଏ ତାର ବ୍ୟବହାରରେ । ଅଯଥାଟାରେ ସେ କଳିକରେ । ରୁକ୍ଷ କର୍କଶ ଭାଷା ପ୍ରୟୋଗ କରେ । ଏକ ଅଦ୍ଭୁତ ଉତ୍ତେଜନାରେ ସେ ଥରି ଥରି ଉଠେ । ନିଜ ଉପରେ ନିଜର କର୍ତ୍ତୃତ୍ୱ ହରେଇ ବସେ । କୋଉ ବିସ୍ମୃତ ଦିନର ସାମାନ୍ୟ ଭୁଲ୍ ବୁଝାମଣା କଥା, କୋଉ ବିଗତ ବର୍ଷର ଗୋଟାଏ ସଂଘର୍ଷର ଘଟଣା,

ସବୁ ଗୋଟିକ ପରେ ଗୋଟିଏ ତାର ମନେ ପଡ଼ିଯାଏ । ସୁଖୀଦିନର କଥା ସଂପୂର୍ଣ୍ଣ ଭାବେ ଭୁଲିଯାଇ ସେ କେବଳ ପାଗଳଙ୍କ ପରି ବକିଯାଏ ଘଣ୍ଟା ଘଣ୍ଟା ଧରି ଏଇ ସବୁ କଥା । ତାର ଜୀବନ ଯେ ଏକ ବ୍ୟର୍ଥତାର ଇତିହାସ—ଏକଥା ସେ ବାରମ୍ବାର ଘୋଷଣା କରେ ଉଚ୍ଚ କଣ୍ଠରେ ।

ସଦା ହାସ୍ୟଚପଳ, ସୁଖୀ ନାରୀଟି କେଉଁ ବିଷାକ୍ତ କୁକୁରର ଦଂଶନରେ ଏମିତି ପାଗଳ ହୋଇଯାଏ ମୁଁ ପ୍ରଥମେ ପ୍ରଥମେ ବୁଝି ପାରୁ ନ ଥିଲି । ବିବାହର ପ୍ରଥମ ଦଶବର୍ଷ ଭିତରେ ମୁଁ ତାର ଏମିତି ଅବସ୍ଥା ଖୁବ୍ କମ୍ ଦେଖିଛି । କିନ୍ତୁ ତା'ର ମାତ୍ରା ଯେମିତି ବର୍ଷକୁ ବର୍ଷ ବଢ଼ି ଚାଲିଲା ପଛକେ କମିଲା ନାହିଁ । କେତେ ଡାକ୍ତର, କେତେ ଔଷଧ । କିଛିରେ କିଛି ଫଳ ନାହିଁ । ସୁସ୍ଥ ଅବସ୍ଥାରେ ସେ ପୁଣି ଭୁଲିଯାଏ ସବୁ କଥା । ଏପରିକି ନିଜେ ସେ ଯେ ଏମିତି କହିଛି ନିଜେ ବିଶ୍ୱାସ କରି ପାରେ ନାହିଁ ।

ରୀନୁର ପ୍ରତିକ୍ରିୟାର ଠିକ୍ ଓଲଟା ପ୍ରତିକ୍ରିୟା ହୁଏ ମୋକୁ । ମୋର ସାମ୍ରାଜ୍ୟରୁ ଫେରି ଆସିଲା ପରେ ସେଇ ସାମ୍ରାଜ୍ୟର ଛାୟା ମୋ ଦେହମନକୁ ପ୍ରାୟ ଦିନ ଦିନ ଧରି ପ୍ରଭାବିତ କରି ରଖିଥାଏ । ସେତେବେଳେ ମୁଁ ରୀନୁକୁ ଦେଖି ବି ଦେଖି ପାରେ ନାହିଁ । ତା କଥା ଶୁଣି ବି ଶୁଣି ପାରେ ନାହିଁ । ଘରର ଦୈନନ୍ଦିନ ଯାବତୀୟ କାର୍ଯ୍ୟକଳାପ ବିଷୟରେ ମୁଁ ଏକାବେଳକେ ନିସ୍ପୃହ ହୋଇଯାଏ । ମୋର ଜାଗ୍ରତ ସୁଷୁପ୍ତି ଓ ସ୍ୱପ୍ନ ଉପରେ ସେଇ ଅତିନ୍ଦ୍ରୀୟ ଜଗତର ସୌନ୍ଦର୍ଯ୍ୟ ଓ ଆନନ୍ଦର ଏକ ଗଭୀର ଘନ ପ୍ରଲେପ ପଡ଼ିଯାଇଥାଏ ।

ରୀନୁ କାନ୍ଦେ । ବିରକ୍ତ ହୁଏ । ଅଭିମାନ କରେ । ରୁଷେ । କଳିକରେ । ମୁଁ ତାକୁ ହତାଦର କରୁଛି, ଅବହେଳା କରୁଛି—ତା ଖବର କିଛି ବୁଝୁନାହିଁ—ସ୍ୱାମୀର କର୍ତ୍ତବ୍ୟ କରୁନାହିଁ ବୋଲି ଅଭିଯୋଗ କରେ । ମୋତେ କଥାରେ କଥାରେ ଆଘାତ କରେ । ମୋର ନିର୍ଲିପ୍ତତାର ସାମ୍ରାଜ୍ୟକୁ ଭାଙ୍ଗି ଭୁଙ୍ଗି ଛିନ୍ନଛତ୍ର କରି ଦେବାର ବୃଥା ପ୍ରୟାସ କରେ । କିନ୍ତୁ ଘୋର ମୋର କଟେ ନାହିଁ, ସେଇ ତନ୍ଦ୍ରାଛନ୍ନ ମୁହୂର୍ତ୍ତ ଆପେ ଆପେ କଟି ନ ଗଲା ପର୍ଯ୍ୟନ୍ତ ।

ଏଇ ଅବସ୍ଥାରେ ଆମେ ଦୁହେଁ ପରସ୍ପରଠୁଁ ଦୂରେଇ ଯାଉ । ଦୁଇ କଲିଜାର ଫାଟ ଗଭୀର ହୋଇଯାଉଥାଏ ଆମର ଅଜ୍ଞାତରେ ।

ଫାଟ ଉପରେ ସମୟର ଧୂଳିଡ଼ମେ । ଆମେ ଭାବୁ ବୋଧହୁଏ ଯୋଡ଼ି ହୋଇଗଲା । ପୁଣି ଆଉ ଗୋଟାଏ ଏମିତି ଘଟଣା ନ ଘଟିବା ଯାଏଁ ଏମିତି

ଭ୍ରମର କୁହୁଡ଼ି ଭିତରେ ଆମେ ଖୁସି ହେଉ—ସୁଖର ସଂସାର କରୁ । 'ଦାମ୍ପତ୍ୟ କଳହେ ଚୈବ ମଧୁରେଣ ସମାପୟେତ' ଆପ୍ତବାକ୍ୟର ପୁନରାବୃତ୍ତି କରୁ ।

ଝିଅ ବାହା ହୋଇଗଲା ବାଙ୍ଗାଲୋର । ପୁଅ ଚାକିରୀ ପାଇ ଗଲା ବରେଲୀ ।

ଆମେ ଦୁଇଜଣ ଏକାକୀ । ଦୀର୍ଘ ଚାରିବର୍ଷ ଧରି । ସେ ବୁଝିପାରୁ ନଥାଏ କାହିଁକି ହୁଏ ?—ମୁଁ ବୁଝି ପାରୁ ନ ଥିଲି କାହିଁକି ହୁଏ ? ଏଇ ଚାରିବର୍ଷ ଧରି ଆମେ ଭାବିଛୁ—ପରସ୍ପରକୁ ବୁଝିବାକୁ ଚେଷ୍ଟା କରିଛୁ । ଆପୋଷ ଭାବରେ ଯୁକ୍ତି କରିଛୁ । ମନର ଅତଳ ଗହ୍ୱରକୁ ଯାଇ ନିଜ ନିଜକୁ ଘାଣ୍ଟି ଦେଖିଛୁ । କେତେ ରାତି—କେତେ ଦିନ କେତେ ସମୟ ପରସ୍ପରକୁ ଛିନ୍‌ଭିନ୍ କରି ପରଖି ଦେଖିଛୁ । ଭୁଲ୍ କୋଉଠି ? କୋଉଠି ରହିଛି ସଂଘାତର ବୀଜଟି ? ସବୁଠି ଦେଖିଛୁ ଆପାତଃ ଦୃଷ୍ଟିରେ କୋଉଠି କିଛି ଭୁଲ୍ ଭଟ୍‌କା ନାହିଁ । ସବୁ ଠିକ୍ । ଆମେ ସୁଖୀ ହେବା ଉଚିତ୍ । ଆମେ ସୁଖୀ—ଅଥଚ—।

ପ୍ରାୟ ଏକ ମୁହୂର୍ତ୍ତରେ ହିଁ ଆମେ ଦେଖିପାରିଲୁ ସେଇ ସତ୍ୟଟିକକୁ । ତାପରେ ଆମେ ଆପୋଷ ମିଳାମିଶାରେ ବିବାହବିଚ୍ଛେଦ ପାଇଁ ଦରଖାସ୍ତ କଲୁ ।

ଆମେ ଦୁଇଜଣଯାକ ଯାଇଥିଲୁ କୋର୍ଟକୁ ।

ସେମିତି ହସ ଖୁସି ଗପ କରି । ଜଜ୍ ସାହେବ ଆଶ୍ଚର୍ଯ୍ୟ । ଓକିଲମାନେ ଆଶ୍ଚର୍ଯ୍ୟ । ଜଜ୍ ସାହେବ ଭାବିଲେ ବୋଧହୁଏ ଆମେ ମୋକଦ୍ଦମା ପ୍ରତ୍ୟାହାର କରିବାକୁ ଆସିଛୁ ବୋଲି । କିନ୍ତୁ ଆମେ ଦୁଇଜଣଯାକ ସମସ୍ୱରରେହିଁ ମନା କରିଦେଲୁ ।

ତାପରେ ଦୁଇଜଣଯାକ ରାୟ ଶୁଣି ପଦାକୁ ବାହାରି ଆସିଲୁ ।

ମୁଁ ରୀନାକୁ ରିକ୍‌ସା ପର୍ଯ୍ୟନ୍ତ ଆଗେଇ ଦେବାକୁ ଗଲି ।

ରୀନା ପଚାରିଲା "ଏଥର ଖୁସି ତ ?"

ମୁଁ କହିଲି "କେଜାଣି ? ମୁଁ ଜାଣି ପାରୁନାହିଁ ମୁଁ ଖୁସି ନା ଦୁଃଖିତ । ରୀନା, ସମସ୍ତେ ଶୈଶବ ଠାରୁ କିଶୋର ବୟସରେ ଏଇ ନିଷିଦ୍ଧ ଇଲାକାର ପ୍ରତିବିମ୍ବ ଦେଖିଥାନ୍ତି । ବୟସ ବଢ଼ିବା ସଙ୍ଗେ ଏଇ ପ୍ରତିବିମ୍ବ କ୍ରମଶଃ ଧୂସର

ହୋଇଯାଏ, ମଳିନ ହୋଇଯାଏ । ଅଧିକାଂଶ ଲୋକଙ୍କର ପରିଣତ ବୟସରେ ଏଇ ପ୍ରତିବିମ୍ବ ପାଶୋଇ ହୋଇଯାଏ । ଆମପରି କେତେଜଣ 'ହତଭାଗ୍ୟ' ବା 'ଭାଗ୍ୟବାନ୍', ସେଇ ଇଲାକାକୁ ଭୁଲି ପାରୁନାହିଁ । ଯେତେ ଯେତେ ବୟସ ବଢ଼େ ନିଷିଦ୍ଧ ଇଲାକାର ମାନଚିତ୍ର ସେତିକି ସେତିକି ଉଜ୍ଜ୍ୱଳ ଓ ସ୍ପଷ୍ଟ ହୋଇଯାଏ । ଜାଗ୍ରତ ଅବସ୍ଥା ସେତିକି ସେତିକି କଠିନ ହୋଇଯାଏ ସହ୍ୟ କରିବାକୁ । ତମ ମୋ ଭିତରେ ନିଜସ୍ୱ ଇଲାକାର ସଂଘର୍ଷ ନାହିଁ—ଆମର ସଂଘର୍ଷ ସେଇ ଇଲାକାରୁ ଖସି ଆସିଥିବା ଦୁଇଟି ପାନ୍ଥ ଅନ୍ୟ ଏକ ଇଲାକାରେ ମିଳିତ ହୋଇ ଏକ ଭାବରେ ନ ରହିପାରିବାର ସଂଘର୍ଷ । ଏଥିରେ ଦୁଃଖ ନାହିଁ କି ସୁଖ ନାହିଁ, ରୀନା, ଅଛି କେବଳ ଆନନ୍ଦ । ଆସ ଆମେ ଚେଷ୍ଟା କରିବା ସେଇ ଆନନ୍ଦକୁ ଧରି ରଖିବାକୁ ।''

ରୀନା କହିଲା ''ବୋଧହୁଏ ତମେ ଠିକ୍ କହୁଚ । ମଣିଷ ନିଜକୁ ଅତି ବେଶୀ ଭୟ କରେ ନ ହେଲେ ନୀଜକୁ ଅତୀବେଶୀ ଭଲପାଏ । ଯେ ନିଜକୁ ସମ୍ମୁଖୀନ ହେବାକୁ ଭୟକରେ ସେ ସାଥୀ ଖୋଜେ ମେଳି ବାନ୍ଧେ, ଗୋଠରେ ରହିବାକୁ ଭଲପାଏ । ଯେ ନିଜକୁ ଭଲପାଏ ସେ ନିଜର 'ଅନ୍ତଃପୁରୁଷର ସାମ୍ନାସାମ୍ନି ହୋଇ ନିଜକୁ ଦେଖେ, ନିଜ ଭଲପାଇବାରେ ନିଜେ ହିଁ ମଶଗୁଲ୍ ହୋଇଯାଏ, ତାର ଅପରର ଆବଶ୍ୟକତା ଦରକାର ପଡେନା, ସେ ଏକାକୀ ରହିବାକୁ ଭଲପାଏ ।

ଆମେ ବୋଧହୁଏ ନିଜକୁ ନିଜେ ବେଶୀ ଭଲ ପାଉଁ ।



ସଦାନଂଦ ପାଣିଗ୍ରାହୀ

# ॥ମେଷଶିଶୁ॥

ତୋ ନିଶ୍ୱାସରେ
କାଂଦ କାଂଦ ବିନୀତ ପବନ
କାହାକୁ କହିବୁ ?
କିଏ ଶୁଣିବ ତୋ' ଆପତ୍ତି ।
ଛଂଡି ହେବ କିଏ
ଦୁଃଖରେ ନା ଘୃଣାରେ ?

କା' ବିଶ୍ୱାସ ଘାତକ ଛୁରୀ
ଝଲସୁଚି ଅନବର୍ତ୍ତ ଅଂଧାର ବିଦାରି,
କୂଳ ଓ କିନାରା ନାଇଁ ।
ଚମକୁଚି କୁହୁଡ଼ିର ଝଡ଼;
ଭୀମ ଅନ୍ଧକାର ।
ସାମର୍ଥ୍ୟ କାହିଁ ତୋ'ର
ନିଜ ଶୂନ୍ୟତାକୁ ମାପିବା ବ୍ୟତୀତ ?

ତୋ' ତଳ ତଳ ଲୁହ ବିଂଦୁ
ଦି' ଟୋପା ନିରୀହ ଆଖିରୁ ଝରି ଶୁଖିଲାଣି
ଭୂଇଁ ବି ଓଦା ହେବାକୁ ଯୁଗଟେ ଲାଗିବ ।

ସାଲୁବାଲୁ ଅବିଶ୍ୱାସ ଅଂଧାରରେ
ତୁ ଶଂକିତ ।
ଜଳମରୁ କଳାଲୁହ ଝରିବା ଭିତରେ
କାଂଦୁଚି ମହାତ୍ମା ଜଣେ
ମାତ୍ର,
ଜଣେ ଲୋକ ।

---

ମୁଖ୍ୟ ଅଧ୍ୟାପକ
ଓଡ଼ିଆ ଭାଷା ଓ ସାହିତ୍ୟ ବିଭାଗ
ଚଂଦ୍ର ଶେଖର କଲେଜ
ଚଂପୁଆ, କେଂଦୁଝର

ରବି ସାମଲ

# ବୃନ୍ଦାବନରେ ବନ୍ୟା

ମୃତ୍ୟୁ ସବୁରି ଜୀବନର ଏକ ଦୁର୍ନିବାର ପରିଣତି । ଅଳିକ ଦୁନିଆଁର ସକଳ ମିଥ୍ୟା ମାୟା ମଧ୍ୟରେ ଏକ ଅଲଂଘନୀୟ ମହାସତ୍ୟ । ତଥାପି କେହି ତାକୁ ଆଦରି ନେଇ ପାରନ୍ତି କି ? ବରଂ ତାର ହିମ ଶୀତଳ ସ୍ପର୍ଶରୁ ରକ୍ଷା ପାଇବାକୁ ଶେଷ ମୁହୂର୍ତ୍ତଯାଏ' ସଂଗ୍ରାମ ଚଳାଇ ଥା'ନ୍ତି । କିନ୍ତୁ ସମରେଶ । ସେ ମୃତ୍ୟୁର ଠିକ୍ ପୂର୍ବ ମୁହୂର୍ତ୍ତରୁ ଲେଖିଗଲେ—" ଆଜିର ମଣିଷ ଏକ ଅଭିଶପ୍ତ ପ୍ରଜନ୍ମର ଜୀବନ କାରୁଣ୍ୟ। ଜୀବନ ଏଠାରେ ଏକ ଘଟଣା ନୁହେଁ ବରଂ ଏକ ଦୁର୍ଘଟଣା । ମୃତ୍ୟୁ ହିଁ ଏଠାରେ ମୁକ୍ତି ଏବଂ ତୃପ୍ତିର ଏକ ମହାମନ୍ତ୍ର "— ସେ କ'ଣ ଏକ ମହାପୁରୁଷ, ନା ବିକୃତ ମସ୍ତିଷ୍କ ?

ସଂବାଦ ପତ୍ର ମାନଙ୍କର ପ୍ରଥମ ପୃଷ୍ଠାରେ ଆଜି ସେଇ ଗୋଟିଏ ଚାଂଚଲ୍ୟ କର ସଂବାଦ— ଏ ସହରର ଉଦୀୟମାନ ଯୁବ ଉପନ୍ୟାସିକ ସମରେଶ ପଟ୍ଟନାୟକ ଗତ ସେପ୍ଟେମ୍ବର ୧୯ ତାରିଖ ମଧ୍ୟରାତ୍ରିରେ ଗଳାରେ ତୀକ୍ଷ୍ଣ ଛୁରିଟା ବିନ୍ଧ କରି ଆତ୍ମହତ୍ୟା କରିଛନ୍ତି ଅଥଚ ମାତ୍ର ଛ'ମାସ ତଳେ ସକଳ ଜାତିଗତ ଅସାମଂଜସ୍ୟ ତଥା ସାମାଜିକ ବାଧା ବଂଧନକୁ ଭ୍ରୁକ୍ଷେପ ନକରି ସେ ବିବାହ କରିଥିଲେ ତାଙ୍କର ଶିକ୍ଷିତା ପ୍ରଣୟନୀ ଅଳକା ଆଗ୍ରଯ୍ୟ‌କୁ ।

ତେଣୁ ସହରର ଗଳି କନ୍ଦିରେ ଆଜି ସେଇ ଗୋଟିଏ ବିବଦମାନ ଆଲୋଚନା ସବୁରି ମନରେ କୋଟିଏ ସଂଦିଗ୍ଧ ପ୍ରଶ୍ନ-ସମରେଶଙ୍କର ଦାମ୍ପତ୍ୟ ଜୀବନ କଳକଳ ଝରଣାଟିଏ ପରି ତେଣ୍ ଛଳଛଳ ହୋଇ ବହି ଯାଉଥିବା ବେଳେ ଏ ଅଚିନ୍ତନୀୟ, ଦୁର୍ଘଟଣାର ଘୂର୍ଣ୍ଣି କାହିଁକି ହଠାତ୍ ଦେଖା ଦେଲା ସେମାନଙ୍କର ଜୀବନ ଆକାଶରେ ? ଆତ୍ମହତ୍ୟା ପାଇଁ ଅନେକ ସହଜ ଉପାୟ ଥାଉଁ ଥାଉଁ ସମରେଶଙ୍କ ପରି ଜଣେ କୋମଳ ହୃଦୟର କବି କ'ଣ ଏମିତି ଏକ ନିର୍ମମ ପଥ ବାଛି ନେଇ ପାରନ୍ତି ? ଏ ପ୍ରକୃତରେ ତାଙ୍କର ଆତ୍ମହତ୍ୟା ନା କାହାର ଏକ ହତ୍ୟାକଣ୍ଡ ??

ସମ୍ବାଦପତ୍ର ମାନଙ୍କର ବିବରଣି ଅନୁଯାୟୀ, ଗତ ୧୯ ତାରିଖ ରାତି ଗୋଟାଏ ବେଳେ ଅଳକା ଦେବୀ ତାଙ୍କ ବାପାଙ୍କ ଘରୁ ଫେରି ସର୍ବପ୍ରଥମେ

ଆବିଷ୍କାର କରିଥିଲେ ଶଯ୍ୟାଉପରେ ସ୍ୱାମୀଙ୍କର ରକ୍ତ ଜୁଡ଼ୁବୁଡ଼ୁ ନିସ୍ପନ୍ଦ ଶରୀରକୁ ତାଙ୍କ ଭୟାର୍ତ୍ତ ଚିତ୍କାରରେ ପଡ଼ିଶା ଘରର ଲୋକମାନେ ଘଟଣାସ୍ଥଳକୁ ଆସି ସବୁ କଥା ଖବର କରିଥିଲେ ଥାନାରେ । ପୋଲିସ୍ ବିଧିବଦ୍ଧ ଭାବେ ପରୀକ୍ଷା ନିରୀକ୍ଷା କରି ତାଙ୍କ ଘରୁ କେତେକ କାଗଜପତ୍ର ସହ ସମରେଶଙ୍କର ହାତ ମୁଠା ମଧ୍ୟରୁ ରକ୍ତାକ୍ତ ଛୁରିଟାଏ ଜବତ୍ କରିବା ସଙ୍ଗେ ସଙ୍ଗେ ଚଟାଣ ଉପରୁ ଅନ୍ୟ ଏକ ପୁରୁଷର ରକ୍ତାକ୍ତ ପାଦ ଚିହ୍ନ ମଧ୍ୟ ଆବିଷ୍କାର କରିଥିଲେ । ସେ ସବୁ ମଧ୍ୟରୁ ଟିପୟ ଉପରୁ ମିଳିଥିବା କାଗଜ ଖଣ୍ଡିକ, କିନ୍ତୁ ବିଶେଷ ଅନୁଧ୍ୟାନ ଯୋଗ୍ୟ, ଯାହା ଉପରେ ସମରେଶଙ୍କର ହସ୍ତାକ୍ଷରରେ ଲେଖାଥିଲା ସେହି ଶେଷ ଟିପ୍ପଣୀ । ମନେହୁଏ କୌଣସି କାରଣରୁ ଜୀବନ ପ୍ରତି ବିତସ୍ପୃହ ହୋଇ ଲେଖକ ସମରେଶ ଆତ୍ମହତ୍ୟା କରିବାର ଅବ୍ୟବହିତ ପୂର୍ବରୁ ଏପରି ଏକ ପଳାୟନ ପନ୍ଥୀ ମତବାଦ ଛାଡ଼ିଯାଇଛନ୍ତି ଏବଂ ତାହାହିଁ ହେଉଛି ତାଙ୍କ ଜଘନ୍ୟ ଆତ୍ମହତ୍ୟା ସପକ୍ଷରେ ଏକ ମାତ୍ର ବଳିଷ୍ଠ ପ୍ରମାଣ ।

ଦ୍ୱିତୀୟ ଉଲ୍ଲେଖନୀୟ ବସ୍ତୁଟି ହେଲା ତାଙ୍କ ନିଜ ନାମାଙ୍କିତ ଅର୍ଦ୍ଧବ୍ୟବହୃତ ଲେଟର ପ୍ୟାଡଟି; ଯାହାର ପ୍ରଥମ ପୃଷ୍ଠାରେ ରହିଥିଲା ତାଙ୍କର ହସ୍ତାକ୍ଷରରେ ଲିଖିତ ଏକ ଅସମାପ୍ତ ପତ୍ର ଅଥଚ ବିଷୟ ବସ୍ତୁ ଥିଲା ସଂପୂର୍ଣ୍ଣ ରହସ୍ୟମୟ ।

ଲେଖାଥିଲା—

ଅପରିଚିତା,

ମୁଁ ସୁରଜିତ୍ ଲେଖୁଛି, ତୁମ ପ୍ରିୟତମ କଳ୍ପନା ବିଳାସୀ ଯୁବ ସାହିତ୍ୟିକ ସୁରଜିତ୍ । ରାତି ଏବେ ନିଶ୍ଚୟ ଦୁଇଟା ପରେ । ସକାଳ ହେବାକୁ ମାତ୍ର ତିନି ଘଣ୍ଟା ବାକୀ । କାଲି ଯେତେବେଳେ ତୁମ ବିଶ୍ୱାସର ବିରୁଦ୍ଧରେ ଏ ଚିଠି ଖଣ୍ଡିକ ତୁମ ହାତକୁ ବଢ଼ାଇ ଦେବି ତୁମେ ଉଲ୍ଲସିତା ହେବା ପୂର୍ବରୁ ଚମକିତା ହୋଇ ଯିବ ନିଶ୍ଚୟ । ଭାବିବ, ମୁଁ ତୁମକୁ ଚିହ୍ନିପାରିଲି ବା କେମିତି— କିନ୍ତୁ ଏଥିରେ ଆଶ୍ଚର୍ଯ୍ୟ ହେବାର ବା କ'ଣ ଅଛି ? ପବିତ୍ର ପ୍ରଣୟ ଏକ ଆତ୍ମସ୍ୱରୀୟ ଉଚ୍ଛ୍ୱାସ କି ନା ! ଦୁହିଁଙ୍କ ମଧ୍ୟରୁ ଯେ କୌଣସି ଜଣେ ପ୍ରଣୟୀ ପ୍ରାଣରେ ନିମ୍ନତମ ସ୍ପନ୍ଦନ ଜାଗିଲେ ଅନ୍ୟର ମନ-ଗହନକୁ ତାହା ସ୍ୱତଃ ସଂଚରିଯାଏ ।

ତୁମେ ଏ ଯାଏଁ କାହିଁକି ମୋତେ ଲୁଚି ଆସିଥିଲ ଜାଣେନି; ଯାଣେନିବି ମୋ ସହ ବନ୍ଧୁତ୍ୱ ସ୍ଥାପନ ପାଇଁ ବ୍ୟାକୁଳତା ହେଲେ ବି "ଅପରିଚିତା" ଛଦ୍ମ ନାମରେ ପତ୍ର ପ୍ରେରଣ କରିବାର ତୁମର ପ୍ରକୃତ ଉଦ୍ଦେଶ୍ୟ କଣ ହୋଇପାରେ କିନ୍ତୁ ତୁମର ପ୍ରଥମ ପତ୍ର ଖଣ୍ଡିକ ପାଇବା ଦିନରୁହିଁ ମୁଁ ଜାଣିଥିଲି, ତୁମେ ଯେତେ ଲୁଚିବାକୁ ଚେଷ୍ଟା କଲେବି, ରୂପକଥାର ହାତତାଳ ପଙ୍କତଳ ନିବୁଜ୍ ଫରୁଆଟିଏ ମଧ୍ୟରେ ଆତ୍ମଗୋପନ କଲେବି, ମୁଁ ତୁମକୁ ଦିନେନା ଦିନେ ଖୋଜି ବେଶ୍ ବାହାର କରି ପାରିବି । ଆଉ ଆଜି ମୁଁ ଜିତି ଯାଇଛି ଅପରିଚିତା ! ବିଳମ୍ବରେ ହେଲେବି ଆଜି, ସେ ସୁଯୋଗ ନିହାତି ଆକସ୍ମିକ ଭାବେ ମୋ ହାତ ମୁଠାକୁ ଚାଲି ଆସିଛି ।

ଆଜି ଯେତେବେଳେ ସାହିତ୍ୟ ସମ୍ମେଳନ ମଂଚ ଉପରେ ମୁଁ ମୋର ସ୍ୱରଚିତ କବିତାଟିଏ ଆବୃତ୍ତି କରୁଥିଲି, ସେତେବେଳେ ପଛ ଧାଡ଼ିରେ ବସି ବି ତୁମେ କେମିତି ତୁମର ସେ ସ୍ୱପ୍ନୀଳ ଆୟତ ଆଖି ଦୁଇଟିରେ ମୋ ଆଡ଼କୁ ନିର୍ନିମେଷ ଭାବେ ଚାହିଁ ଆନନ୍ଦରେ ଝୁରୁଲି ଉଠୁଥିଲ, ମୁଁ ବେଶ୍ ଲକ୍ଷ୍ୟ କରିଛି । ବିଶ୍ୱାସ କର ଯେତେବେଳେ ତୁମ ଆଖିରେ ମୋ ଆଖି ନିବଦ୍ଧ ହୋଇଯିବା ମାତ୍ରେ ମୋ ଛାତି ଭିତରଟା କେମିତି ଏକ ଅଜ୍ଞାତ ଆବେଗରେ ଶିହରି ଉଠିଥିଲା । ମୋର ମନେ ହୋଇଥିଲା, ତୁମେ ନିଶ୍ଚୟ ମୋର ସେଇ କବିତା ମୁଗ୍‌ଧା ଖିଆଲୀ ପ୍ରେୟସୀଟି ବିନା ଅନ୍ୟ କେହି ହୋଇ ନପାର । ତାପରେ ମୋ'ର ସେ ଧାରଣା ଅଧିକ ଦୃଢ଼ୀଭୂତ ହୋଇଥିଲା, ଯେତେବେଳେ ସମ୍ମିଳନୀ ଶେଷରେ ତୁମେ ତୁମର କେତେଜଣ ବାଂଧବୀଙ୍କ ସହ ମୋ ନିକଟକୁ ଆସିଥିଲ ମୋର ସ୍ୱାକ୍ଷର ନେବାକୁ । ଅଥଚ ଅନ୍ୟ ସମସ୍ତେ ଛଳଛଳ ଝରଣା ପ୍ରାୟ ମୋ ହାତକୁ ସେମାନଙ୍କର ଡାଏରୀଟି ମାନ ବଢ଼ାଇ ଦେଇଥିବା ବେଳେ ତୁମେ ଦୂରରେ ଠିଆ ହୋଇଥିଲ, ଲଜ୍ଜାନମ୍ର ନିଷ୍ପ୍ରାଣ ପ୍ରତିମାଟିଏ ପରି । ଶେଷରେ ସେଥିପାଇଁ ତୁମର ଜଣେ ବାଂଧବୀଙ୍କୁ ରୀତିମତ୍ ପଛକୁ ଠେଲି ଠେଲି ଆଣିବାକୁ ପଡ଼ିଥିଲା ନା ! ଈଶ୍ୱର ବଡଲୋକ—ଫେରିଗଲା ବେଳେ ତୁମର ସେ ବାଂଧବୀଟିର ସେଇ ଧୀର ମନ୍ଥର ମନ୍ତବ୍ୟଟି ବେଶ୍ ମୋ କାନରେ ପଡ଼ିଯାଇ ଥିଲା—"ଚିଠି ଲେଖିବାକୁ ଲାଜ ଲାଗୁନି ଅଥଚ ଆମକୁ ଡାକିଆଣି ଏଠି ତାଙ୍କ ପାଖକୁ ଯିବାକୁ ଏତେ ଲାଜ ! ସେ କେତେ ମଫସଲି ଭାବି ନ ଥିବେ ସତେ ।" ଦେଖ୍, ଯଦି କାଲି ତାଙ୍କ ସହ କଥା ନ କହିବୁ ନା, ତେବେ ତୋତେ ତାଙ୍କ ପାଖରେ ନିଶ୍ଚୟ ଧରା ପକାଇ ଦେବି ।"

ଥରେ ଦୁଇଥର ପଢ଼ନ୍ତୁ କଣ୍ଠେଇ କଣ୍ଠେଇ ଗୁହିଁ ବେଶ୍ ତୁମେମାନେ ଗ୍ଳାନି ଆସିଯାଇଥିଲ କିନ୍ତୁ ଅଥଳ ଅତଳ ସାଗର ଗର୍ଭରୁ ନିହାତି ଆକସ୍ମିକ ଭାବେ ଦୁର୍ଲଭ ମୁକ୍ତା ଖଣ୍ଡିଏ ଉଦ୍ଧାର କରିଥିବାର ଭଳି ଉଲ୍ଲାସରେ ସେହି ମୁହୂର୍ତ୍ତରୁ ହିଁ ମୁଁ ଉଚ୍ଚାଟିତ ହୋଇ ପଡ଼ିଛି । ଏ ବିଳମ୍ବିତ ରାତ୍ରିରେ ବି ମୋ ଆଖିକୁ ନିଦ ଆସୁନି । ଏକ ତିକ୍ତ ମଧୁର ଯନ୍ତ୍ରଣାରେ ମୁଁ ଛଟ ପଟ ହେଉଛି ପ୍ରତିଟି ମୁହୂର୍ତ୍ତରେ ।

ତୁମେ ହୁଏତ ବିଶ୍ୱାସ କରି ନପାର, ତୁମର ସେ ପ୍ରଥମ ପତ୍ରଟି ପାଇବା ଦିନରୁ ମୁଁ ଯେ ତୁମକୁ ଆକୁଳ ହୃଦୟରେ କେତେ ଖୋଜିଛି, ତୁମର ସାନିଧ୍ୟ କେତେ ଗୁହିଁଛି ବିଭିନ୍ନ ସଫଳ କାବ୍ୟ କବିତା ପାଇଁ ମୁଁ ଏ ଯାଏ ପାଠକ ପାଠିକା ମାନଙ୍କଠାରୁ ବହୁ ପ୍ରଶଂସା ଭରା ପତ୍ର ପାଇଛି, ପାଇଛି ବି ଅନେକ ପ୍ରତ୍ୟକ୍ଷ ବଧାଇ । ସେ ସବୁ ମୋତେ ଉଲ୍ଲସିତ କରିଥିଲା ସତ କିନ୍ତୁ କେବେ ଏମିତି ଉଚ୍ଚାଟିତ କରିପାରି ନଥିଲା, କିନ୍ତୁ ତୁମର ଯେ କେତେ ଧାଡ଼ି ଅକ୍ଷର ମଧ୍ୟରେ ଭରି ରହିଥିଲା ଏକ ଅବଦମିତ ସମ୍ମୋହନ, ଅଲଂଘନୀୟ ଆକର୍ଷଣ । ତୁମେ ବୁଝିପାରିବନି ପ୍ରିୟା, ସେଇ ଦିନରୁ ମୁଁ କେମିତି ତୁମର ଏଇ କଳ୍ପିତ ମୂର୍ତ୍ତିକୁ ମନ ମନ୍ଦିରରେ ପ୍ରତିଷ୍ଠା କରି ପ୍ରୀତିର ନୈବେଦ୍ୟ ଦେଇ ଆରାଧନା କରି ଆସିଛି । ତୁମର ସେ ଚିଠିର ଭାଷାରେ ଯଦି ନିମ୍ନତମ ସତ୍ୟତା ଥାଏ, ତେବେ ତୁମେ ଯେ ମୋତେ ଠିକ୍ ସେତିକି ଆନ୍ତରିକତା, ସେତିକି ଆକୁଳତା ନେଇ ଭଲ ପାଉଛ—ଏହା କ'ଣ ମିଛ ? ତେବେ କାହିଁକି ପ୍ରିୟା, ତୁମେ ମୋ ପାଇଁ ବଂଧୁତ୍ୱର ଫୁଲ କଅଁଳ ହାତ ବଢ଼ାଇ ଦେଇ ବି ଏମିତି ଗୋପନ ରୂପିଣୀ ସାଜିବାକୁ ଭଲ ମଣିଛ ? କାହିଁକି ସନ୍ଦେହର ଅଥଳ ଜଳକୁ ଫିଙ୍ଗି ଦେଇ ମୋତେ ଏମିତି ଉଦ୍ଧ୍ୱଶ୍ୱାସ କରି ଗ୍ଳାନିଛ ?

କାଲି ପୁଣି ଆମର ସେଇଠି ସାକ୍ଷାତ ହେବ ନା । ନାଁ, କାଲି ମୁଁ କିଛି ମାନିବିନି କିଛି ଶୁଣିବିନି, ନେଇଯିବି ନିଶ୍ଚୟ ତୁମକୁ ଏକ ଅଜଣା ନିର୍ଜନ ଦ୍ୱୀପକୁ । ଯୋର କରି ଉତାରି ଦେବି ଦେହ ମନରୁ ତୁମର ଲଜ୍ଜା, ସଂଭ୍ରମର ସମସ୍ତ ପୋଷାକ । କାନ ଧରି କରାଇବି.....

ବେଶ୍ ଏତିକି ମାତ୍ର ଲେଖା ହୋଇଥିଲା ଲେଟର ପ୍ୟାଡ୍‌ଟିର ପ୍ରଥମ ପୃଷ୍ଠାରେ । ନିଶ୍ଚିତ ଭାବେ ଏହା ଏକ ଅସମାପ୍ତ ପ୍ରଣୟ ପତ୍ର । କିନ୍ତୁ କିଏ ଏହି କବି ସୁରଜିତ୍ ? ଜଣାଯାଏ, ସତକୁ ସତ ସୂଚନା ଭବନରେ ଗତ ୧୭

ତାରିଖରୁ ଅନୁଷ୍ଠିତ ହେଉଥିବା ଯୁବ ଲେଖକ ସମ୍ମିଳନୀରେ ଯୋଗ ଦେବାକୁ ସମରେଶ ପ୍ରତିଦିନ ଯାଉଥିଲେ ଏବଂ ସେଦିନ ସମ୍ମେଳନୀର ଉଦ୍‌ଯାପନ ଉତ୍ସବରେ ମୁଖ୍ୟ ଭୂମିକା ଗ୍ରହଣ କରି ରାତି ୧୦-୩୦ରେ ଫେରି ଆସିଥିଲେ । ତେବେ କ'ଣ '·ସୁରଜିତ୍‌''ର ଛଦ୍ମ ନାମରେ ତାଙ୍କର ସେହି "ଅପରିଚିତା" ପ୍ରାୟ ନିକଟକୁ ସମରେଶଙ୍କର ଏ ଏକ ଗୁପ୍ତ ପ୍ରଣୟ ପତ୍ର ? ଅଥଚ ପରବର୍ତ୍ତୀ ଅନୁସଂଧାନରୁ ଜଣାଯାଏ, ସମରେଶ କୌଣସି ଦିନ ସମ୍ମେଳନ ସ୍ଥଳୀରେ କୌଣସି ତରୁଣୀ ସହ ଆଳାପ କରି ନାହାଁନ୍ତି କିମ୍ବା କେଉଁ ତରୁଣୀର ଡାଏରୀରେ ସ୍ୱାକ୍ଷର କରିବା ତାଙ୍କୁ କେହି ଦେଖି ନାହାଁନ୍ତି । ତେବେ କାହା ଉଦ୍ଦେଶ୍ୟରେ ଏ ରହସ୍ୟ ବୃତ୍ତ ଅସମାପ୍ତ ପତ୍ର ?

ସେ ଅଶୁଭ ରାତ୍ରିରେ, ଅଳକା ଦେବୀ ଯେ, ନିଜ ବାପାଙ୍କ ଘରକୁ ବୁଲି ଯାଇଥିଲେ ଏହା ଅବଶ୍ୟ ପ୍ରମାଣିତ ହୋଇ ଯାଇଛି, କିନ୍ତୁ ପ୍ରଶ୍ନ ଉଠେ, ପ୍ରେମ ବିବାହ ପରେ ପିତାମାତାଙ୍କ ସହ କୌଣସି ସ୍ୱାଭାବିକ୍ ସଂପର୍କ ଫେରି ନଥିବା ସତ୍ତ୍ୱେ କାହିଁକି ଅଳକା ଦେବୀ ସେଦିନ ଅନାହୂତା ଭାବେ ଏକାକିନୀ ଯାଇଥିଲେ ସେଠାକୁ ? କାହିଁକି ବି ସେହି ବିକମ୍ପିତ ରାତ୍ରିରେ ଫେରିଥିଲେ ଏକାକିନୀ ? .....ତାଙ୍କ ପୂର୍ବରୁ ଘର ମଧ୍ୟରେ ପ୍ରବେଶ କରି ପଦଚିହ୍ନ ଛାଡି ଯାଇଥିବା ସେ ଅଜ୍ଞାତ ବ୍ୟକ୍ତିଟି କିଏ—ଯାହାର ସଂଧାନ ଏଯାଏଁ ବି ପୋଲିସ୍ ପାଇପାରି ନାହାନ୍ତି ? ତେବେ କ'ଣ ସେ ସମରେଶଙ୍କୁ ହତ୍ୟାକରି ତାଙ୍କ ହାତରେ ଛୁରୀଟିକୁ ଧରାଇ ଦେଇଛି ସମସ୍ତଙ୍କ ମନରେ ଆତ୍ମହତ୍ୟାର ଭ୍ରମ ସୃଷ୍ଟିବାକୁ ? ? କଥାଟା ଯଦି ସତ୍ୟ ହୁଏ, ତେବେ କ'ଣ ବା ତାର ଉଦ୍ଦେଶ୍ୟ ?

ଏସବୁ ପ୍ରଶ୍ନର ଉତ୍ତର ଦେବାକୁ ହୁଏତ ଆଜି ସମରେଶ ନାହାନ୍ତି କିମ୍ବା କେବେ ଫେରିବେନି । କିନ୍ତୁ ତାଙ୍କର ଏ ଅପମୃତ୍ୟୁର କାରଣ ଯାହା ହେଉନା କାହିଁକି, ଏହା ନିଶ୍ଚିତ ଭାବେ ଓଡ଼ିଆ ସାହିତ୍ୟ ଜଗତ ପ୍ରତି ଏକ ଅପୂରଣୀୟ କ୍ଷତି ।

## ଦୁଇ

ମୁଁ ଅଳକା । ଶ୍ରୀମତି ଅଳକା ପଟ୍ଟନାୟକ—ସ୍ୱର୍ଗତ ସମରେଶ ପଟ୍ଟନାୟକଙ୍କର ସଦ୍ୟ ବିଧବା ପତ୍ନୀ । ମାତ୍ର କେତେ ଦିନ ତଳେ ବାବା,

ମା'ଙ୍କର ଅବାଧ୍ୟ କନ୍ୟା ସାଜି ଆସିଥିଲେ ସହରକୁ। ସପନର ଅଂଜନ ମୁଁ ମାଖି ସମରେଶଙ୍କର ହାତ ଧରିଥିଲି ଏକ ଆନ୍ତରୀୟ ପ୍ରଣୟର ପରିପୂର୍ଣ୍ଣତା ପାଇଁ ଅଥଚ ସେଦିନର ସେ ସ୍ୱପ୍ନ ବିଭୋର ହରିଣୀ ଆଖି ଦୁଇଟିରେ ମୋର ଆଜି କୁହୁର ବନ୍ୟା, ନୈରାଶ୍ୟର ନିରନ୍ଧ୍ର ଅଂଧକାର। କିଏ, କିଏ ପୋଛିନେଲା ମୋ ଆୟତ ଆଖିରୁ ସ୍ୱପ୍ନର ସେ ବର୍ଣ୍ଣମୟୀ ଇନ୍ଦ୍ରଧନୁକୁ ?? —ସମରେଶ ? ସେଇ ନାମ ଅଜଣା ନିର୍ଲଜ୍ଜା "ଅପରିଚିତା" ?? (ଯେଉଁ ନାମରେ ହିଁ ମୁଁ ତାଙ୍କୁ ଜାଣେ) ନାଁ ମୁଁ ନିଜେ ???

ସେଦିନ କେତେ ତାରିଖ ଆଉ କି ବାର ଥିଲା ଆଜି ଅବଶ୍ୟ ମୋର ମନେନାହିଁ କିନ୍ତୁ ସେଦିନର ସେ ଜ୍ୟୋତ୍ସ୍ନାସ୍ନିଗ୍ଧ ନିଝୁମ୍ ସଂଧ୍ୟାଟା ଯେ, ମୋ ରକ୍ତ ସ୍ରୋତରେ ସୀମାହୀନ ନୈରାଶ୍ୟ ଏବଂ ଅନ୍ତର୍ଦହନର ସ୍ଲୋ ପଏଜନ୍ ଭରି ଦେଇଥିଲା—ସେ କଥା କଣ ମୁଁ କେବେ ଭୁଲି ପାରିବି ? ସେଦିନ ସମରେଶଙ୍କର ପ୍ରିୟ ବଂଧୁ କୁମାର ବାବୁ ଆସି ହସି ହସି କହିଲେ, "ବୁଝିଲ ଭାଉଜ, ଏଥର ପତିଦେବତାଙ୍କୁ ପଣତ କାନିରେ ମାତଗଣ୍ଠି ଦେଇ ବାଂଧିରଖ, ତାର ପ୍ରିୟ ପାଠିକା ମାନେ ଯେମିତି ତାକୁ ପ୍ରେମ କରିବା ଆରମ୍ଭ କରି ଦେଲେଣି ନା କେଉଁ ଦିନ ତୁମ ହାତ ମୁଠାରୁ ତାଙ୍କୁ ଝାମ୍ପି ନେଇଯିବେ।"

ସମରେଶ କହିଲେ, "ତୋର ହିଂସା ହେଉଛି ନା କ'ଣ ? ବ୍ୟସ୍ତ ହୋ'ନି ମୁଁ ତ କେବେଠୁଁ ଅଇଁଠା ହୋଇ ସାରିଲିଣି। ମୋତେ କେହି ଝାଂପିବାକୁ ଆସିଲେ ମୁଁ ତୋତେ ହିଁ ଏଥର ଦେଖାଇ ଦେବି। ଆଗ କଥାଟା କ'ଣ କହ ?"

କୁମାର ବାବୁ ମୋ ହାତକୁ ବଢାଇ ଦେଲେ ସେଦିନ ଡାକରେ ତାଙ୍କ ମାର୍ଫତରେ ସମରେଶଙ୍କର ନାମରେ ଆସିଥିବା ଏକ ଅନ୍ତର୍ଦେଶୀୟ ପତ୍ର। ପ୍ରେରିକା ଥିଲେ ସମରେଶଙ୍କର ସଦ୍ୟ ପ୍ରକାଶିତ ଏକ ଉପନ୍ୟାସର ଜଣେ ମୁଗ୍ଧ ପାଠିକା। ଅଥଚ ପ୍ରକୃତ ନାଁ ବଦଳରେ ସେ ଚିଠି ଲେଖିଥିଲା, "ଅପରିଚିତା"ର ଛଦ୍ମ ନାମରେ। ସମରେଶଙ୍କର ଅନେକ ଉପନ୍ୟାସର ତାରିଫ୍ କରି ତାଙ୍କ ନିକଟକୁ ଏଯାଏଁ ମୁଗ୍ଧ ପାଠକ ପାଠିକାଙ୍କର ଚିଠି ମୁଁ ଦେଖିଛି, ସେ ସବୁକୁ ପାଠକଲା ପରେ ନିଜ ଅଜାଣତରେ ମୋ ଛାତି ବି ଫୁଲି ଉଠେ ସଫଳତାର ଅପରିସୀମ ଉଲ୍ଲାସରେ। କିନ୍ତୁ ସେଦିନର ସେ ଚିଠିଟା ପଢିସରିବା ପରେ କାହିଁକି କେଜାଣି ମୋ ମନଟା ହଠାତ୍ ଗଭୀର ଅସ୍ୱସ୍ତିରେ

ଥରିଗଲା । ସ୍ୱାଭାବିକତାର ସକଳ ଚେଷ୍ଟା ସତ୍ତ୍ୱେ ବି ମୋ ମୁଖ ମଣ୍ଡଳରେ ପ୍ରତିଭାତ ହୋଇ ଉଠିଲା ଅହେତୁକ ଗାମ୍ଭୀର୍ଯ୍ୟ ।

ସମରେଶ ମୋ ହାତରୁ ଚିଠିଟି ନେଇ ପଢ଼ିସାରି ଖିଲ୍ ଖିଲ୍ ହୋଇ ହସି ଉଠିଲେ । କହିଲେ ସତରେ ବଡ଼ ଅଦ୍ଭୁତ ଏଇ ଝିଅଟା । ବାଂଧବୀ ପାଇଁ ହାତ ବଢ଼ାଇଛି ଅଥଚ ନିଜ ପରିଚୟ ଗୋପନ ରଖି ଛଦ୍ମ ନାମରେ ଚିଠି ଲେଖିଛି । ବୁଝିଲୁ କୁମାର, ଠିକଣାଟା ଯଦି ଦେଇ ଥାଆନ୍ତା, ତେବେ ସଙ୍ଗେ ସଙ୍ଗେ ମୁଁ ଯାଇ ତାକୁ ବୁଝାଇ ଦେଇ ଆସନ୍ତି, କେମିତି ତା'ର ଧାରଣା ସଂପୂର୍ଣ୍ଣ ଅମୂଳକ । କେମିତି, ମୁଁ ଏକ ଦୂର ପାହାଡ଼ର ମାୟା ମାତ୍ର ଦୂରରୁ ସୁନ୍ଦର ସବୁଜ ଦେଖା ଯାଉଥିଲେ ବି, କିପରି ପ୍ରକୃତରେ ମୋ ବକ୍ଷ କେବଳ କଙ୍କରିତ ପ୍ରସ୍ତର ଖଣ୍ଡ ଏବଂ ତୀକ୍ଷ୍ଣ କଣ୍ଟକରେ ଭରା । ସେଇ ମାୟାରେ ଅନ୍ଧୁଣୀ ହୋଇ, ଆଜି ଜଣେ ଘରଦ୍ୱାର, ବାଂଧୁ ବାଂଧବ ଏବଂ ପଦସ୍ଥ ପତିର ସକଳ ଆକର୍ଷଣ ଏଡ଼ାଇ ଦେଇ କିପରି ମୋ ଦରିଦ୍ର ଗୃହାଙ୍ଗନରେ ସ୍ୱୈରିଣୀ ମା' ପରି ଆଖି ମଳି କାନ୍ଦୁଛି, ଟାଣି ଟାଣି ଆଣି ଦେଖାଇ ଦିଅନ୍ତି ତାକୁ ।

କଥାଟା କହିସାରି ମୋ ଆଡ଼କୁ ଚାହିଁ ହସିଲେ ସେ ଲୁଚି ଲୁଚି । ମୁଁ କୃତ୍ରିମ କ୍ରୋଧରେ ଆଖି ବଡ଼ ବଡ଼ କରି କହିଲି, କେବେଠାରୁ ଏମିତି ସର୍ବଜ୍ଞ ହେଲଣି ମ ? ହେଲା, ହେଲା । ମୋ କଥା ମୁଁ ବୁଝୁଛି । ତୁମକୁ ତ କେବେ ମୋ ଲୁହ ପୋଛିବାକୁ କହୁନି ।

ସମରେଶଙ୍କ ସହ କୁମାର ବାବୁ ବି ହସି ହସି ଗଡ଼ିଯାଇଥିଲେ ସେଦିନ ମୋ କଥାରେ । ବାସ୍ ସେତିକିରେ ହିଁ ଶେଷ ହୋଇଥିଲା ସେ ଆଲୋଚନା କିନ୍ତୁ ସେଦିନ ରାତି ଅଧରେ ହଠାତ୍ ନିଦରୁ ଉଠି ଦେଖିଲି, ମୋ ବାହୁ ବଂଧନ ମଧ୍ୟରେ ଶୋଇ ରହିବି ସମରେଶ ବେଡ୍ ଲାଇଟ୍‌ର ନୀଳ ନିଷ୍ପ୍ରଭ ଆଲୋକରେ ସେଇ ସଦ୍ୟାଗତ ପତ୍ର ଖଣ୍ଡିକୁ ବାରମ୍ବାର ପଢ଼ି ଉଲ୍ଲସିତ ଏବଂ ରୋମାଂଚିତ ହେଉଛନ୍ତି ଅଥଚ ମୋ ନିଦ ଭାଙ୍ଗିଲା ମାତ୍ରେ ଚିଠିଟିକୁ ଲୁଚାଇ ଦେଇ ଶୋଇ ଯିବାର ଛଳନା କରୁଛନ୍ତି ।

ସେ ଯେ, ସେଇ ଅଦେଖା ଅପରିଚିତା ପତ୍ର ପ୍ରେରିକାଟି ପ୍ରତି ଅଜ୍ଞାତ ଭାବେ ଆକର୍ଷିତ ଏବଂ ଦୁର୍ବଳ ହୋଇ ପଡ଼ିଛନ୍ତି ମୁଁ ବେଶ୍ ଅନୁମାନ କରିନେଲି । ଧାରଣାଟା ମୋତେ ଆଦୌ ଶାନ୍ତି ଦେଇ ପାରିଲାନି । ତଥାପି,

ମୁଁ ତାଙ୍କୁ ଜିଣ୍ଡି ନ ପାରୁରି ସ୍ୱାଭାବିକତାର ଛଳନା କଲି । ଷଷ୍ଠ ପଡ଼ର ସମବେଶ ଶୋଇଗଲେ ସତ, କିନ୍ତୁ ମୋ ଆଖିକୁ ନିଦ ଆସିଲାନି, ତକିଆ ତଳୁ ଧୀରେ ଧୀରେ ବାହାର କରି ମୁଁ ଆଉ ଥରେ ପଢ଼ିବାକୁ ଲାଗିଲି ଯେଉଁଟିକୁ ।

ହେ ମୋର କଳ୍ପନା ବିଳାସୀ ବଂଧୁ ପ୍ରବର,.... .... .... .... ....

କଳ୍ପନାକୁ ଯଦି ଏକ ରଙ୍ଗିନ ବରଫାବୃତ ହିମାଳୟ ବୋଲି ଧରିନିଆଯାଏ, ତେବେ ଆପଣ ଯେ ତାର ଏଭେରେଷ୍ଟ ଗିରିଶୃଙ୍ଗର ଶିର୍ଷ ଦେଶରେ ଏହା ନିଃସନ୍ଦେହ । ଦୟାକରି ଏହାକୁ ମୋର ଉଦ୍ଦେଶ୍ୟ ମୂଳକ ସ୍ତବ ପାଠ ବୋଲି ଭାବିବେନି, ଆପଣ ଯଦି ଜଣେ କଳ୍ପନା ବିଳାସୀ ଲେଖକ ପ୍ରବର ତେବେ ମୁଁ ବି ଏକ କଳ୍ପନା ପ୍ରିୟା.....କିନ୍ତୁ ଲେଖିକା ନୁହେଁ ପାଠିକା, ବିଶ୍ୱାସ କରନ୍ତୁ, ଆପଣଙ୍କ ଗଳ୍ପ ଉପନ୍ୟାସ ମାନଙ୍କର ମୁଁ ଏକ ମନ୍ତ୍ରମୁଗ୍ଧ ପାଠିକା.ଆପଣଙ୍କ ସହ ବଂଧୁତ୍ୱ ସ୍ଥାପନ ପାଇଁ ମୁଁ ବହୁକାଳରୁ ଲାଳାୟିତ; ଆପଣ କ'ଣ ସତରେ ମୋର ଏ ପ୍ରସ୍ତାବକୁ ନିଷ୍ଠୁର ଭାବେ ପ୍ରତ୍ୟାଖ୍ୟାନ କରିବେ ? ନାଁ, ଆପଣଙ୍କର "ସ୍ୱୀକୃତି" ଅବା '!ପ୍ରତ୍ୟାଖ୍ୟାନ' ଆଜି ମୋ ନିକଟରେ ଗୁରୁତ୍ୱ ହୀନ । ମାନସିକ ସ୍ତରରେ ଆତ୍ମାରେ ଆତ୍ମାରେ ମୁଁ ଆପଣଙ୍କୁ ବହୁ କାଳରୁ ବଂଧୁଟିଏ ବୋଲି ଗ୍ରହଣ କରି ସାରିଛି ।

ଜାଣେନି, ଆପଣ ଯୁବକ ଅବା ବୃଦ୍ଧ, କନ୍ଦର୍ପ ଅବା କଦାକାର; ପାଇନି ବି ଆପଣଙ୍କର କର୍ମପନ୍ଥା ସଂପର୍କରେ ନିମ୍ନତମ ଆଭାସ । ଜାଣେନି ଆପଣ ଅନ୍ୟ କେଉଁ ବାନ୍ଧବୀର ବଂଧୁ କି ନୁହଁନ୍ତି । ତଥାପି ଏକ ଏ ଆତ୍ମା-ସ୍ତରୀୟ ଆହ୍ୱାନରେ ମୁଁ ଆପଣଙ୍କୁ ପ୍ରିୟ ବଂଧୁଟି ଭାବେ ଗ୍ରହଣ କରି ସାରିଛି ବହୁ କାଳରୁ; ସଂଭବତଃ ଆପଣଙ୍କର ପ୍ରଥମ ଉପନ୍ୟାସ ପଢ଼ିବା ପରେ ।

ମୋ ବିଷୟରେ କ'ଣ ବା ଲେଖିବି ? ନିଜର ସଂଜ୍ଞା ମୁଁ ନିଜେ ବି ଜାଣେନା ; ତେବେ ଏତିକି ଜାଣନ୍ତୁ—ଆଜି ଅଷ୍ଟାଦଶ ବର୍ଷୀୟା ଜନୈକା ଚପଳ ମତି କଲେଜ ଛାତ୍ରୀ (ଆଧୁନିକା ରଙ୍ଗିନ୍ ପ୍ରଜାପତି) ହେଲେ ବି, ମୁଁ କବି କଳ୍ପନାର ବହିର୍ଭୁତା ଲେଖକର ଲେଖନୀ ଅସ୍ପର୍ଶା ଏକ ଜୀବ, ହୁଏତ ହସି ପାରନ୍ତି ମୋ କଥା ଶୁଣି । ତଥାପି ଏଇ ମୋର ପରିଚୟ..... ଏଥର ବଂଧୁ ହେବାକୁ ରାଜି ତ ? ଡରି ଯାଆନ୍ତୁନି ବଂଧୁ ଏହାକୁ ମୋର ପ୍ରେମ ନିବେଦନ ଭାବି, ମୁଁ ସମସ୍ତଙ୍କୁ ସ୍ନେହ କରେ, ଭଲପାଏ, ପ୍ରେମ ଯଦି ଏହାର ଅନ୍ତର୍ଗତ

ତେବେ ସେଥିରେ ମୋର ଦ୍ୱିଧା ନାହିଁ । ମୋ ମନର ସ୍କ୍ରିନ୍‌ରେ ଯିଏ ଯେଉଁ ରୂପରେ ଥରେ ଅଂକି ହୋଇଯାଏ, ସେ ସେମିତି ରହିଥାଏ ଚିରଦିନ ପାଇଁ । ସମୟ ଅଙ୍କନକୁ ଲିଭାଇ ପାରେନା । କିମ୍ବା ସଂପର୍କର ଘନିଷ୍ଠତା ତାକୁ ବଦଳାଇ ପାରେନା । ଆଉବା କଣ ଲେଖିବି ? ଶେଷରେ ଆପଣଙ୍କର ପରବର୍ତ୍ତୀ ସାହିତ୍ୟ କୃତିର ସଫଳତା ପାଇଁ ଅସରନ୍ତି ଶୁଭ କାମନା କରି ରହୁଛି । ବିଶ୍ୱାସ, ଅପରିଚିତା ହେଲେ ବି ଜଣେ ବାନ୍ଧବୀ ହିସାବରେ ଅନ୍ତତଃ ମୋର ଏତିକି ଅଧିକାର ରହିଛି । "ଇତି" ନୁହେଁ କେବଳ ଆଜି ପାଇଁ ଏତିକି.....

ଆପଣଙ୍କର
ଅପରିଚିତା

ଚିଠିଟି ଶେଷ କଲା ବେଳକୁ ମୁଁ ପାଲଟି ଯାଇଥିଲି ଏକ ଭିନ୍ନ ଅଳକା । ସଂଦେହ ଏବଂ ଈର୍ଷାର ସଂଖ୍ୟାହୀନ ବିଷାକ୍ତ ଜୀବାଣୁ ମୋ ହୃଦୟକୁ ତିଳ ତିଳ କରି କ୍ଷତ ବିକ୍ଷତ କରି ଚାଲିଥିଲେ ସେମାନଙ୍କର ତୀକ୍ଷ୍ଣ ନଖ ଦାନ୍ତରେ । ସତରେ କଣ ସମରେଶ ଶେଷରେ ଏଇ ନିର୍ଲଜ୍ଜୀ ବାହାଣୀ-ଟାର ପ୍ରେମ ନିବେଦନକୁ ଭଲ ଉଚ୍ଛ୍ୱାସରେ ଗ୍ରହଣ କରି ନେବେ ? ଆଉ ଯଦିବା ଏ ସଂଭାବନା ସତ୍ୟ ହୁଏ, ତେବେ କ'ଣ ହେବ ମୋର ଅବସ୍ଥା ।

ସମରେଶଙ୍କ ପକ୍ଷରେ ଏହା ଅସମ୍ଭବ ନୁହେଁ, ସବୁ କଳାକାର ନିଜ ସ୍ତାବକ ମାନଙ୍କ ନିକଟରେ ଅସଂଭବ ଭାବେ ଦୁର୍ବଳ, ଆଉ ସବୁ କଳ୍ପନା ପ୍ରିୟା ତରୁଣୀତ ନିଜର ପ୍ରିୟ କଳାକାରଙ୍କର କଳାର କୁହୁକରେ ଅନ୍ଧୁଣୀ ସାଜି ଯାଆନ୍ତି । ମୁହୂର୍ତ୍ତକର ଭାବ ପ୍ରବଣତାରେ ଭାସି ଯାଇ ସବୁ କିଛି ଉତ୍ସର୍ଗ କରିବାକୁ ପଶ୍ଚାଦ୍‌ପଦ ହୁଅନ୍ତିନି । ନିଜେ ମୁଁ ହିଁ ତ ଏହାର ଜ୍ୱଳନ୍ତ ନିଦର୍ଶନ । ଦିନେ ସମରେଶଙ୍କର ଗୋଟିଏ ଉପନ୍ୟାସରେ ବିମୁଗ୍ଧ ହୋଇ ପ୍ରଥମ କରି ମୁଁ ତାଙ୍କୁ ଲେଖିଥିଲି ଏମିତି ଏକ ଚିଠି । ସେ ବି ପରମ ଆନ୍ତରିକତା ସହ ଉତ୍ତର କରିଥିଲେ ତାର ଏବଂ ସେଇ ଘଟଣାରୁ ହିଁ ଆମ ବଂଧୁତ୍ୱର ଆରମ୍ଭ । ତାପରେ ସମୟର ସ୍ୱାକ୍ଷର ନେଇ ଦିନେ ଆମର ସେ ବଂଧୁତ୍ୱ ପରିଣତ ହୋଇଗଲା ପ୍ରଣୟରେ ଏବଂ ସେଇ ପ୍ରଣୟର ଚିରନ୍ତନ ରୂପାୟନ ପାଇଁ ମୁଁ ପିତୃଗୃହର ସକଳ ଆକର୍ଷଣ ଉଚ୍ଚ ଖାନଦାନର ସମସ୍ତ ବାଧାବଂଧନକୁ ତୁଚ୍ଛ ମଣି ଧରିଥିଲି ସମରେଶଙ୍କର ହାତ, ସେତେବେଳେ ମୋ ସମ୍ମୁଖରେ ଥିଲା କେବଳ ଗୋଟିଏ ମାତ୍ର ସମ୍ବୋହନ— ଉଦୀୟମାନ

ଉପନ୍ୟାସିକ ସମରେଶଙ୍କର ରଙ୍ଗ ବିଭୋର ପ୍ରଣୟ ସାମ୍ରାଜ୍ୟର ଏକକ ସାମ୍ରାଜ୍ଞୀ ସାଜିଛି ର ନୀଳନିଶା । ସେ ସାମ୍ରାଜ୍ୟର ବିସ୍ତୃତ ସମତଳ ଉପରେ ଅନ୍ୟ କେଉଁ ନାରୀର ପାଦ ପାତର ସଂଞ୍ଚରନାକୁ ମଧ୍ୟ ମୁଁ ସହ୍ୟ କରି ପାରୁ ନଥିଲି, ଅଥଚ ମୋ ବିଶ୍ୱାସର ବିରୁଦ୍ଧରେ ଏ କ'ଣ ଦେଖିଲି ମୁଁ ?

ମୋ ଆଖିର ଝର ଲୁହ ସ୍ପର୍ଶରେ ଉଠି ପଡି ନିଦ ମଳ ମଳ ଆଖିରେ ସେ ପ୍ରଶ୍ନ କଲେ, ଅଳି ତୁମେ କାନ୍ଦୁଛ ?

କିନ୍ତୁ ମୋ କଣ୍ଠରେ ଅନ୍ୟ ଏକ ପ୍ରଶ୍ନ —" ମୋର ଗୋଟିଏ କଥା ରକ୍ଷା କରିବ" ?

—ମୁଁ କେବେ ତୁମର ଅବାଧ୍ୟ ହୋଇଛି ?

ତେବେ ମୋ ଦେହ ଛୁଇଁ ଶପଥ କର, ମୋ ଭିନ୍ନ ଅନ୍ୟ କୌଣସି ନାରୀ ପ୍ରତି କେବେ ଦୁର୍ବଳତା ପ୍ରକାଶ କରିବନି, ତୁମ ମନ ଅଙ୍ଗନରେ ସବୁଦିନ ଲାଗି ପ୍ରଣୟର ଏକକ ଦୀପାଳୀଟିଏ ହୋଇ ଜଳିବା ଆଶାରେ ମୁଁ ଘର ଛାଡ଼ିଛି ସମରେଶ ସେଠାରେ ଅନ୍ୟ କାହାର ଛାୟାପାତକୁ ମୁଁ କେବେ ସହି ପାରିବିନି । ସତ କହୁଛି, ସେତେକ ଜାଣିଲେ ମୁଁ କେବେ ଆତ୍ମ ହତ୍ୟା କରିବାକୁ ବି ପଛାଇବିନି ।

ସେ ହୁଏତ ତାଙ୍କ ଦୂର ଦୃଷ୍ଟିରେ ପଢ଼ି ନେଇଥିଲେ ମୋ ମନ ତଳର ଭାଷା,ମୋତେ ତାଙ୍କର ନିବିଡ ବାହୁ ବଂଧନ ମଧ୍ୟକୁ ଟାଣି ନେଇ ହସି ହସି କହିଥିଲେ. ମୋ ମନ ଅଙ୍ଗନର ହାଉସ୍ ଯେ ଫୁଲ୍, ଆଉ ସିଟ୍ଥିଲେ ସିନା କାହାରି ପ୍ରବେଶର ପ୍ରଶ୍ନ ଉଠିବ ?

ସେଦିନରୁ ଆଉ କେବେ ସେ ପ୍ରଶ୍ନ ଉଠି ନଥିଲା । ଝଡ ପରର ଆକାଶ ପରି ମୋ ମନ ହୋଇ ଉଠିଥିଲା, ନିର୍ମଳ ଉଜ୍ଜ୍ୱଳ ଶାନ୍ତ କାନ୍ତ, କିନ୍ତୁ ଗତ ୧୯ ତାରିଖ ରାତିରେ....,୧୭ ତାରିଖରୁ ନିୟମିତ ଭାବେ ସେ ଯାଉଥିଲେ ସୂଚନା ଭବନରେ ଅନୁଷ୍ଠିତ ହେଉଥିବା ଏ ବର୍ଷର ଯୁବଲେଖକ ସମ୍ମେଳ-ନରେ ଯୋଗ ଦେବାକୁ । ମୁଁ ଜାଣି ଜାଣି ଯିବାକୁ ମନା କରି ଦେଇଥିଲି ତାଙ୍କ ସହ । ସେଠାରେ ସେ ଦୁର୍ବୋଧ୍ୟ କବିତା ଆବୃତ୍ତି ଶୁଣିବା ଅପେକ୍ଷା ଯେଉଁ ସମୟ ମାନଙ୍କରେ ଘରେ ଶୋଇ କୌଣସି ଗପ ବହି ପଢ଼ିବା ବରଂ

ଭଲ । ସେଦିନ ରାତି ସାଢେ ଦଶ ବାଜିଲା, ତଥାପି ଫେରିଲେନି ସମରେଶ ନିର୍ଜନ ଭଡ଼ା ଘରଟିରେ ମୁଁ ଏକାକିନୀ । ଶୋଷୋଇ ସାରି ଶେଯ ଉପରେ ଗଡ଼୍ ଗଡ଼ୁ ହଠାତ୍ ଜଣେ ବାଂଧବୀ ନିକଟକୁ ଚିଠି ଦେବା କଥା ମୋର ମନେ ପଡ଼ିଲା, ସେଲଫ୍ ମଧ୍ୟରୁ ବାହାର କଲି ସମରେଶଙ୍କର ଲେଟରପ୍ୟାଡ୍ କିନ୍ତୁ ଖୋଲି ଦେଲା ପରେ ଏ କ'ଣ ଦେଖିଲି ମୁଁ ?

ଅର୍ଦ୍ଧ ସମାପ୍ତ ଲେଟର ପ୍ୟାଡ୍‌ଟିର ପ୍ରଥମ ପୃଷ୍ଠାରେ ଥିଲା 'ଅପରିଚିତା' ଉଦ୍ଦେଶ୍ୟରେ ଲିଖିତ ସମରେଶଙ୍କର ଏକ ଅସମାପ୍ତ ପତ୍ର । ପଢ଼ିଲା ପରେ ଆତ୍ମ ବିଶ୍ୱାସର ସୁଦୃଢ଼ ପ୍ରାଚୀର ମାନ ମୋ ଆଖି ସାମନାରେ ଭାଙ୍ଗିରୁଜି ଧ୍ୱଂସ ବିଧ୍ୱସ୍ତ ହୋଇଗଲା । ଅବଶ୍ୟ 'ସମରେଶ' ପରିବର୍ତ୍ତେ "ସୁରଜିତ୍" ନାମ ବ୍ୟବହୃତ ହୋଇଥିଲା ସେ ଅସମାପ୍ତ ପତ୍ରଟିରେ, ଯାହାକୁ ମୋଠୁ ଲୁଚାଇ ସେ ଲେଖିଥିଲେ ଗତ ରାତିରେ କିନ୍ତୁ ମୁଁ ବେଶ୍ ବୁଝି-ନେଇ ଥିଲି; ସେ ସୁରଜିତ କିଏ ? ତେବେ ସମରେଶଙ୍କର ଗତ କାଲି ସୂଚନା ଭବନ ଯୁବଲେଖକ ସମ୍ମିଳନରେ ସାକ୍ଷାତ ହୋଇଥିଲା ସେ ନିର୍ଲଜ୍ଜୀ ଅପରିଚିତା ସହ । ମୋ ଘଣ୍ଟାରେ ସେତେବେଳେ ରାତି ଏଗରା, ଦଶଟାରେ ଶେଷ ହେବାର କଥା ସମ୍ମେଳନ । କୁଆଡ଼େ ଗଲେ ଏପାଏଁ ସମରେଶ ? ହୁଏତ ସେ ଡାହାଣୀ ସହ ପ୍ରେମାଳାପରେ ମାତି ଥିବେ ସାହିତ୍ୟ ଆଲୋଚନା ଆଳରେ, କିଏ ଜାଣେ ସତକୁ ସତ କେଉଁ ଲଜିଂଘର ଅବରୁଦ୍ଧ କକ୍ଷରେ ପ୍ରେମାନ୍ଧ ହୋଇ କଟୁ ନ ଥିବ ତାଙ୍କର ଏ ମୁହୂର୍ତ୍ତମାନ । ଆଉ ଏଣେ ମୁଁ ଏକାକିନୀ ଧୂପଟିଏ ଭଳି ଜଳି ଜଳି ନିଃଶେଷ ହେଉଛି ତାଙ୍କର ଏ ନିର୍ଜନ ଭଡ଼ା ଘରେ ।

କଥାଟା ଭାବିଲା ମାତ୍ରେ ମୋ ସ୍ନାୟୁର ସହରରେ ହଠାତ୍ ଏକ ବୋମା ବିସ୍ଫୋରଣ ଘଟିଗଲା, ଅନୁଭବ କଲି, ଜୀବନ ମୋର ବ୍ୟର୍ଥ ହୋଇ ଯାଇଛି । ପ୍ରଣୟର ଯେଉଁ ନିର୍ମଳ ଝର ଜଳର ମୋହରେ ମୁଁ ଅଣ୍ଟ୍ ଗଣ୍ଠି ଛିଣ୍ଡାଇ ବନ୍ଧା ବିଘ୍ନର ଉତପ୍ତ ମରୁ ବାଲି ଉପରେ ଏତେ କାଳ ଧରି ଦୌଡ଼ି ଆସିଥିଲି, ତାହା ଏକ ମରିଚୀକା ମାତ୍ର । ସବୁ କଳା କାଚ ଗୋଟାଏ ଗୋଟାଏ କଳଙ୍କର ଭଣ୍ଡାର । ସେମାନଙ୍କୁ ବିବାହ କରିବାଠାରୁ ବଳି ନିର୍ବୋଧତା ଦୁନିଆଁରେ ଆଉ କିଛି ନାହିଁ । ତେବେ କେଉଁ ମୁଁହ, କେଉଁ ଦୃଢ଼ତା ଧରି ଆଜି ମୁଁ ବଂଚି ରହିବି ? କି ଜବାବ ଦେବି ମୁଁ ମୋର ପିତା, ମାତା ଓ ସମାଜକୁ ? ମୁଁ ଉପଲବ୍ଧି କଲି, ମୋ ପାଇଁ ମୁକ୍ତି ଏବଂ ତୃପ୍ତିର ଏକମାତ୍ର

ଉପାୟ ହେଉଛି ଆତ୍ମହତ୍ୟା । ପ୍ରବଳ ମାନସିକ ଉତ୍ତେଜନାରେ ସମରେଶଙ୍କୁ ଚିଠି ଖଣ୍ଡେ ଲେଖି ମୁଁ କବାଟ ଖୋଲି ବାହାରି ଗଲି ରାସ୍ତା ଉପରକୁ ।

ଆତ୍ମହତ୍ୟାର ଶକ୍ତିଶାଳୀ ନିଶାରେ ମୋହାଚ୍ଛନ୍ନ ହୋଇ ମୁଁ ସେଇ ଅଂଧାରୀ ରାତିରେ ଏକାଗ୍ର ଚିତ୍ତରେ ଚାଲିଥିଲି ରେଲ ଲାଇନ୍ ଆଡ଼କୁ, ମାଡ୍ରାସ୍-ହାଓଡା ଏକସ୍‌ପ୍ରେସ୍‌ର ବଜ୍ର ଶକ୍ତ ଚକ ଅର୍ଗଳି ତଳେ ମୋ କୋମଳ ଗଳାକୁ ସମର୍ପି ଦେବାକୁ । ହଠାତ୍ ବାଟରେ ମନେ ପଡ଼ିଲା ମୋର ବାପା, ମାଙ୍କ କଥା । ହୁଏତ ସେମାନଙ୍କ ନିକଟରେ ମୁହଁ ଦେଖାଇବାକୁ ମୋର ଆତ୍ମବଳ ନ ଥିଲା, ତଥାପି ସମସ୍ତଙ୍କୁ ଶେଷ ମୁହୂର୍ତ୍ତରେ ଟିକେ ଦେଖି ଗଲେ କ୍ଷତି କ'ଣ ?

ଅସମୟରେ ମୋତେ ଦେଖି ପ୍ରଥମେ ବାବାଙ୍କର ଚକିତ ଚାହାଣୀରେ ଅପତ୍ୟ ସ୍ନେହର ଝଲକ ଉକୁଟି ଉଠିଲା କିନ୍ତୁ ପର କ୍ଷଣରେ କାହିଁକି କେଜାଣି ତାଙ୍କର ମୁଖ ମଣ୍ଡଳର କୋମଳ ମାଂସ ପେଶୀମାନ କ୍ରମେ କଠୋର ହୋଇ ଉଠିଲେ, ସେ ବିଶେଷ କିଛି କହିବା ପୂର୍ବରୁ ଘର ଛାଡ଼ି ଚାଲି ଆସିଥିଲି, ସମରେଶ ଅପେକ୍ଷା କରିଥିବେ ବୋଲି କହି । ତାପରେ ମୋର ଏକମାତ୍ର ଲକ୍ଷ୍ୟ ଥିଲା ରେଲ ଧାରଣା । ମାଡ୍ରାସ୍‌ର ସମୟ କ୍ରମେ ପାଖେଇ ଆସୁଥିଲା । ବିଳମ୍ବ କଲେ ହୁଏତ ଅନ୍ୟ ଅସୁବିଧା ଆସିଯାଇ ପାରେ ।

ମୁଁ ଏକ ଛୋଟିଆ ବୁଦା ଉହାଡ଼ରେ ଆତ୍ମଗୋପନ କରି ପ୍ରତୀକ୍ଷା କରି ରହିଲି ଆଗାମୀ ଟ୍ରେନକୁ । କିନ୍ତୁ ହାଏ । ସମୟ ଗଡ଼ିଯିବାକୁ ବସିଲେ ମଧ୍ୟ କାହିଁକି କେଜାଣି କୌଣସି ଟ୍ରେନ ଆସୁନଥାଏ । ସମରେଶ ହୁଏତ ଏହା ମଧ୍ୟରେ ଘରକୁ ଫେରି ମୋ ଚିଠି ପଢ଼ି ଖୋଜିବାକୁ ଆସି ପାରନ୍ତି ଏଠାକୁ । ଭେଟ ହୋଇଗଲେ କି ଉତ୍ତର ଦେବି ତାଙ୍କୁ ମୁଁ ? କଥାଟା ଭାବିବା ମାତ୍ରେ ଏକ ଅବ୍ୟକ୍ତ ଯନ୍ତ୍ରଣାର ଅନନ୍ତ ସ୍ୱର ଲିପି ମୋ ସମଗ୍ର ସ୍ନାୟୁ ଗ୍ରନ୍ଥିମାନଙ୍କରେ ଅନୁରଣିତ ହୋଇ ଉଠିଲା । ତାଙ୍କର ଅଶ୍ରୁସଜଳ ନିରୀହ ଆଖି ଦୁଇଟି ମୋ ଆଖି ସାମନାରେ ନାଚିଗଲା । କର୍ଣ୍ଣ ଗହ୍ୱରରେ ପ୍ରତିଧ୍ୱନିତ ହୋଇ ଉଠିଲା ଅନତି ଅତୀତର ସକଳ ସ୍ନେହ ପୂର୍ଣ୍ଣ ସଂଳାପ । ମୋର ମନେ ହେଲା ସତେ ଯେମିତି ସମରେଶ ଘରକୁ ଫେରି ମୋ ଚିଠି ପଢ଼ି

ପାଞ୍ଚ ବର୍ଷର ଅନାଥ ଶିଶୁଟି ପରି ମୁଣ୍ଡପିଟି କାନ୍ଦୁଛନ୍ତି । ଆହା ବିଚରା ସମରେଶ ! — ଯାହାଙ୍କର ପ୍ରଣୟାମୃତ ପାଇଁ କଳଙ୍କର ଅସଂଖ୍ୟ ପସରାକୁ ମୁଁ ହସି ହସି ମୁଣ୍ଡରେ ଲଦିଥିଲି ! — ଏତିକି ଭାବିବା ମାତ୍ରେ ହଠାତ୍ ମୋର ଅଭିମାନୀ ଦ୍ରୁତହୃଦୟ ଦରଦରେ ଓଦା ହୋଇ ଗଲା । ସିଟି ବଜାଇ ଲୌହ ଦାନବ ପ୍ରାୟ ମାଡ଼ି ଆସୁଥିଲା ମୋର ପ୍ରତିକ୍ଷିତ ଟ୍ରେନ । ଅଥଚ ମୋ ପାଦ ଆଗକୁ ଯାଇ ପାରିଲାନି ।

ଟ୍ରେନ ଛାଡ଼ିଯିବା ମାତ୍ରେ ହଠାତ୍ ମୁଁ ଅନୁଭବ କଲି ଯେ, ମୁଁ ଏକାନ୍ତ ନିସ୍ୱ ହୋଇ ପଡ଼ିଛି । ସମଗ୍ର ପୃଥିବୀରେ ସମରେଶଙ୍କର ବାହୁଚ୍ଛାୟା ତଳ ହିଁ ମୋର ଏକମାତ୍ର ନିର୍ଭର ଯୋଗ୍ୟ ଆଶ୍ରୟ ସ୍ଥଳ । ଗୋଟାଏ ଖିଆଲରେ ଏମିତି ଧୈର୍ଯ୍ୟହୀନା ହୋଇ ତାଙ୍କୁ ଛାଡ଼ି ଆସି ମୁଁ ଏକ ବିରାଟ ଭୁଲ କରି ବସିଛି । ଅନୁତାପ ବିଦଗ୍ଧ ହୃଦୟରେ ମୁଁ ଦ୍ରୁତ ପଦରେ ପଛକୁ ଫେରିଲି କିନ୍ତୁ ଘରେ ପହଞ୍ଚି ଏ କ'ଣ ଦେଖିଲି ମୁଁ ? ବେଡ୍ ରୁମ ଅନ୍ଧାର, ସାମନା ଦରଜା ମେଲା । ଭିତରକୁ ପଶି ବେଡ୍ ସୁଇଚ୍‌ରେ ହାତ ଦେଲା ମାତ୍ରେ ସଂଜ୍ଞାହୀନ ହୋଇ ଯାଉଁ ଯାଉଁ ଏକ ବିକଟ ଚିତ୍କାର କରି ଉଠିଲି ମୁଁ ।

ମୋ ସଂଜ୍ଞା ଫେରିବା ବେଳକୁ ମୋ ଘରେ ପୋଲିସର ଭାରୀ ଜୋତାର ଆଓ୍ୱାଜ ଶୁଭୁଥିଲା । ପରୀକ୍ଷା ନିରୀକ୍ଷାରୁ ଜଣାଗଲା, ମୋ ପହଞ୍ଚିବା ପୂର୍ବରୁ ଘର ମଧ୍ୟକୁ ଅନ୍ୟ ଜଣେ କିଏ ପ୍ରବେଶ କରି ତା ରକ୍ତାକ୍ତ ପାଦର ସ୍ପଷ୍ଟ ଚିହ୍ନ ଛାଡ଼ି ଯାଇଥିଲା । ର୍ୟାକ୍ ସେଲଫ ଏବଂ ଟେବୁଲ ଉପର ସମସ୍ତ ବହି କାଗଜ ପତ୍ର ଇତସ୍ତତଃ ହୋଇ ପଡ଼ିଥିଲା । ସଂଭବତଃ ଅଜ୍ଞାତ ଆଗନ୍ତୁକ ଜଣକ ବ୍ୟସ୍ତ ବିବ୍ରତ ହୋଇ କିଛି ଗୋଟାଏ ଖୋଜୁଥିଲା ସେଗୁଡ଼ିକ ମଧ୍ୟରୁ । ପୋଷ୍ଟ ମର୍ଟମ ରିପୋର୍ଟରୁ ଜଣାଗଲା, ରାତି ସାଢ଼େ ଏଗାରଟାରୁ ବାର ମଧ୍ୟରେ ଏକ ଧାରୁଆ ଛୁରୀ ଦ୍ୱାରା ସମରେଶଙ୍କର କଣ୍ଠନଳୀ କାଟି ଦିଆ ଛିବା ଫଳରେ ପ୍ରବଳ ରକ୍ତ ସ୍ରାବ ହୋଇ ତାଙ୍କର ମୃତ୍ୟୁ ଘଟିଛି । ତାଙ୍କ ହାତରୁ ପୋଲିସ ଉଦ୍ଧାର କରିଥିବା ଛୁରୀଟି ନିଶ୍ଚିତ ଭାବେ ଆମ ଘରର । କିନ୍ତୁ..... ଏ ତାଙ୍କର ଆତ୍ମହତ୍ୟା ନା ଅନ୍ୟ କାହାର ଜଘନ୍ୟ ନରହତ୍ୟା— ମୁଁ ନିଜେ ବି ବୁଝିପାରୁ ନଥିଲି ।

ମୁଁ ଜାଣେ ସମରେଶ ଯଦି ସତରେ ଆତ୍ମହତ୍ୟା କରିଥାନ୍ତି ତେବେ ତାର କାରଣ ନିଶ୍ଚିତ ଭାବେ ତାଙ୍କ ପାଖ ଲିଖିତ ମୋର ସେ ନିର୍ମମ ଚିଠି

ଖଣ୍ଡିକ । କିନ୍ତୁ ଆଶ୍ଚର୍ଯ୍ୟ କଥା ସେ ଚିଠିଟି ଅବା ତାର ଛିନ୍ନାଂଶ ମଧ୍ୟ କେଉଁଠୁ ମିଳିଲାନି । ତାଙ୍କ ଅପମୃତ୍ୟୁର କାରଣ ରୂପେ ସମସ୍ତଙ୍କର ଘୃଣାର ପାତ୍ର ସାଜି ଠିଆ ହେବାକୁ ମୋର ଲେଶ ମାତ୍ର ଆତ୍ମବଳ ନ ଥିଲା, ତେଣୁ ଜାଣି ଜାଣି ପୋଲିସ ନିକଟରେ ମୁଁ ସବୁକଥା ଗୋପନ ରଖି ସେ ସମ୍ପର୍କରେ ସଂପୂର୍ଣ୍ଣ ଅଜ୍ଞ ବୋଲି ମିଥ୍ୟା ଷ୍ଟେଟମେଣ୍ଟ ଦେଲି ।

ଏ ଦୁର୍ଘଟଣା ପରେ ବାବା, ମା ମୋତେ ଜୋର କରି ନେଇ ଆସିଛନ୍ତି ତାଙ୍କ ଘରକୁ—ବଂଚିବାର ଶୂନ୍ୟ ପାନ ପାତ୍ରରେ ମୋର କିଛିଟା ଅନୁକମ୍ପାର ଜଳ ଢାଳି । କିନ୍ତୁ ତାଙ୍କର ସେ ତ୍ରିତଳ ପ୍ରାସାଦରେ ଆଲୋକର ବନ୍ୟା ମଧ୍ୟରେ ବି ମୁଁ ଆଜି ମର୍ମେ ମର୍ମେ ଅନୁଭବ କରୁଛି ମୋ ଚତୁପାର୍ଶ୍ୱରେ ଏକ ଭୟଙ୍କର ମହାଶ୍ମଶାନର ସୀମାହୀନ ଭୌତିକ ଅଂଧକାର ଏବଂ ତା ମଧ୍ୟରେ ନିଜ ମସ୍ତକକୁ ନିଜେ ଛିନ୍ନ କରି ହସ୍ତରେ ଧରି ମୁଁ ଘୁରି ବୁଲୁଛି ଛିନ୍ନମାସ୍ତା ହୋଇ ।

—୩—

ମୁଁ କୁମାର ସାମନ୍ତ । ମାସିକ ଓଡ଼ିଆ ଗଳ୍ପ ପତ୍ରିକା "ଗଳ୍ପଶ୍ରୀ"ର ସଂପାଦକ ଏବଂ କଥାକାର ସମରେଶ ପଟ୍ଟନାୟକଙ୍କର ଅନ୍ୟତମ ଅନ୍ତରଂଗ ବଂଧୁ । ଏକଥା ମଧ୍ୟାହ୍ନର ସୂର୍ଯ୍ୟାଲୋକ ପରି ସତ୍ୟ ଯେ, ସମରେଶଙ୍କର ବେଡ୍‌ରୁମରୁ ଗତ ୧୯ ତାରିଖରେ ପୋଲିସ ଯେଉଁ ରକ୍ତାକ୍ତ ପାଦଚିହ୍ନ ଆବିଷ୍କାର କରିଛନ୍ତି ସେ ପଦଚିହ୍ନ ମୋର ଏବଂ ଅପମୃତ ଲେଖକ ବଂଧୁଟିର ବିବାଦମାନ ମୃତ୍ୟୁ କାହାଣୀର ରହସ୍ୟର ଗୁବିକାଠି ମୋ ହାତରେ । କିନ୍ତୁ ସେ ରହସ୍ୟର ଅଡୁଆ ସୂତାକୁ ଖୋଲି ଦେବାକୁ ମୁଁ ଚାହେଁ ନି, ଚାହେଁ ନି ମୋ ପ୍ରିୟ ବଂଧୁ ଏବଂ ବଂଧୁ ପତ୍ନୀଙ୍କର ମାନସିକ ଦୁର୍ବଳତାକୁ ଲୋକଚକ୍ଷୁରେ ଉଲଗ୍ନ କରି ଦେବାକୁ, ଅନେକ ସଂଦେହ ଘନ ବିବାଦମାନ ଘଟଣା କରି ରହିଯାଉ ବରଂ ଏହା ସବୁଦିନ ପାଇଁ ସବୁରି ଆଖିରେ ଏକ ରହସ୍ୟ ହୋଇ ।

ସମରେଶଙ୍କର ବ୍ୟକ୍ତିଗତ ଜୀବନ ସହ ମୁଁ ଅଂଗାଂଗୀ ଭାବେ ଜଡ଼ିତ ଏବଂ ଆଜକୁ ପ୍ରାୟ ଛ'ମାସ ତଳେ ତା'ର ପ୍ରଣୟିନୀ ଅଳକା ଆଚାର୍ଯ୍ୟଙ୍କୁ ମୁଁହିଁ ମୁଖ୍ୟ ଭୂମିକା ନେଇ ସଜାଇ ଥିଲି ତାର ପରିଣିତା । କାରଣ, ଅଳକା ବିନା ତାର ଜୀବନଯେ ଏକାନ୍ତ ଦୁର୍ବିସହ ଏକ ଜୀବନ୍ତ—ମରଣ ପାଲଟିଯିବ; ସେ କଥା ମୁଁ ମର୍ମେ ମର୍ମେ ଅନୁଭବ କରି ଥିଲି ସେ ଦିନ ମାନଙ୍କରେ । କିନ୍ତୁ ଯେଦିନର ସେଇ ମମତା ମୟୀ କଲ୍ୟାଣୀ ପ୍ରିୟା-ବଧୂଟିର ଭିତ୍ତିହୀନ

ନୀଳଈର୍ଷା ପାଇଁ ମୋ ପ୍ରିୟ ବନ୍ଧୁଟିର ଜୀବନ ଯେ ଦିନେ ଏମିତି ସ୍ୱଳ୍ପାୟୁ ଶେଫାଳିଟି ପରି ଝଡ଼ିଯିବ—ଏ କଥା କଣ ସ୍ୱପ୍ନରେ ସୁଦ୍ଧା ବିଶ୍ୱାସ କରିଥିଲି ମୁଁ ?

୧୮ ସେପ୍ଟେମ୍ବର ରାତି ଦଶଟାରେ ଯୁବ ଲେଖକ ସମ୍ମେଳନରେ ଯୋଗ ଦେଇ ଫେରିଲା ବେଳେ ମୁଁ ସମରେଶଙ୍କୁ ଅନୁରୋଧ କରିଥିଲି ଗଳ୍ପଶ୍ରୀର ଆଗାମୀ ପୂଜାସଂଖ୍ୟା ପାଇଁ ଲେଖାଟିଏ ଦେବାକୁ । ସେ କିନ୍ତୁ ଦ୍ୱିମତ ହେଲା କହିଲା ସବୁ ବର୍ଷ ତ ମୋ ଲେଖା ତୋ ପତ୍ରିକାରେ ବାହାରୁଛି । ଏ ବର୍ଷ ବରଂ ଅନ୍ୟ କେଉଁ ଉଦୀୟମାନ ଲେଖକକୁ ସୁଯୋଗ ଦେ । ମୁଁ ଏବେ ସାଂସାରିକ ଜଞ୍ଜାଳ ମଧ୍ୟରେ ସଂପୂର୍ଣ୍ଣ ମୁହ୍ୟମାନ । ଯାହାବା କେତେଟା ଲେଖିଛି, ସେ ସବୁକୁ ଅନ୍ୟ ପତ୍ରିକା ମାନଙ୍କୁ ଦେବାକୁ ହେବ । ତୁ ସିନା ମୋତେ ବୁଝି ପାରିବୁ କିନ୍ତୁ ସେମାନେ ତ ଆଉ ବୁଝିବେନି । ମୋ ମୁଣ୍ଡରେ ବି ଆଉ କିଛି ନୂଆ ପ୍ଲଟ୍ ଯୁଟିନି ତୋ ପାଠକ ପାଠିକାଙ୍କ ମନ ଛୁଇଁ-ବାକୁ ।

ମୁଁ କହିଲି, କ'ଣ ହେଲା ? ଗଳ୍ପଶ୍ରୀର ପୂଜା ବିଶେଷାଙ୍କ ବାହାରିବ ସମରେଶ ପଟନାୟକର ଗଳ୍ପ ନ ନେଇ ? ଅସଂଭବ । ତୁ ତ ଜାଣୁ ବଜାରରେ ତୋର କେତେ ଖାଉ; ସମସ୍ତଙ୍କ ବରଦ, ତୋ ଗଳ୍ପ ନିଶ୍ଚୟ ପ୍ରକାଶିତ ହେବ । ଭୁଲି ଗଲୁଣି କି, ଗତ ବର୍ଷ ଅପରିଚିତା ଛଦ୍ମ ନାମରେ ସେ ଝିଅଟି ତୋତେ କ'ଣ ଲେଖିଥିଲା ? ଅନ୍ତତଃ ତା ପାଇଁ ତ ତୋତେ କିଛି ଗୋଟାଏ ଲେଖିବାକୁ ହେବ ? ଦେଖ୍ ସମୟ ଖୁବ୍ କମ । ତୋତେ କାଲି ମଧ୍ୟରେ ପାଣ୍ଡୁଲିପି ଯେମିତି ହେଲେ ଦାଖଲ କରିବାକୁ ହେବ ।

କିନ୍ତୁ ପ୍ଲଟ୍ ?

—ସେଇ ଅପରିଚିତା ଝିଅଟିକୁ ନେଇ ହିଁ ତୋତେ ଲେଖିବାକୁ ହେବ ଏକ ମନ ଛୁଆଁ କାହାଣୀ । ବାସ୍ତବରୁ ଖାଣ୍ଟି ସୁନାରେ କଳ୍ପନାର ଖାଦ ମିଶାଇ ଗଢ଼ିବାକୁ ହେବ ତୋତେ ଏକ ଆକର୍ଷଣୀୟ ଅଳଙ୍କାର । ଦେଖିବୁ, ଖୁବ୍ ମର୍ମସ୍ପର୍ଶୀ ହେବ ତାହା । ଆଉ ସେ ଅପରିଚିତା ନା ! ଏଥର ରିତିମତ୍ ଦୌଡ଼ି ଦୌଡ଼ି ଆସି ପଡ଼ି ଯିବ ତୋର ପାଦତଳେ ।

ସମରେଶ ହସି ଉଠିଲା ମୋ କଥାରେ । ରାଜି ହୋଇଥିଲା ବି ମୋ ପ୍ରସ୍ତାବରେ । ତା ପରେ ଭେଟ ହୋଇଥିଲା ତା ସହ ମୋର ୧୯ ତାରିଖ ରାତି ପ୍ରାୟ ୧୧ଟାରେ, ମୋ ଘରେ ସେଦିନ ଉଦ୍‌ଯାପନ ଉତ୍ସବରେ

ଯୋଗ ଦେଇ ପାରି ନଥିବାରୁ ଆସିଥିଲା କୈଫତ ମାଗିବାକୁ । ଗପ୍ପ ଗପ୍ପ ଜାଣିଲି, ସତକୁ ସତ ସେ ମୋ କଥା ରଖି ଗଳ୍ପ ଲେଖିବା ଆରମ୍ଭ କରି ଦେଇଛି ଅପରିଚିତାକୁ ନେଇ । କିନ୍ତୁ ହାତରେ ଆଉ ସମୟ ନଥିବାରୁ ମୁ ସେଇ ଘଡ଼ିରେହିଁ ବାଧ୍ୟ କରି ଥିଲି ତାକୁ ଗଳ୍ପଟିକୁ ଶେଷ କରିବାକୁ । ସ୍ଥିର ହେଲା, ଘଣ୍ଟାଏ ଛାଡ଼ି ମୁଁ ପହଞ୍ଚିବି ତା ଘରେ ଏବଂ ସେ ଶେଷ କରି ସାରି-ଥିବ ସେତେବେଳକୁ ଗପଟିକୁ । କିନ୍ତୁ ଘଡ଼ି ୧୨ଟାରେ ତା ଘରେ ପହଞ୍ଚି ଏ କ'ଣ ଦେଖିଲି ମୁଁ ?

ସମରେଶର ଅଧରା ଭଡ଼ାଘର ନିସ୍ତବ୍ଧ ନିଷ୍କଳ ଅଥଚ ଦାଣ୍ଡ କବାଟ ମେଲା, ମୁଁ ଡାକି ଡାକି ଭିତରକୁ ପଶିଲି । ତଥାପି ବି ଉତ୍ତର ନଥିଲା, ବେଡ୍ ରୁମରେ ପଶି ଲାଇଟ ଜାଳି ଦେଇ ମାତ୍ରେ ମୁଁ ଦେଖିଲି, ମୋ ପ୍ରିୟ ବଂଧୁଟିର ରକ୍ତ ପ୍ଲାବିତ ଚଟାଣ ଉପରେ ମୋ ପାଦ । ଚିତ୍କାର କରୁ କରୁ ମୁଁ ନିଜକୁ ଆୟତ କରି ନେଲି । ଦେଖିଲି, ପାର୍ଶ୍ୱ ଟିପୟ ଉପରେ ରହିଛି ଦୁଇଟି ଚିଠି ଛୋଟିକ୍ ଉପରେ ମୋ ନାମ, ତରତରରେ ସେଇଟିକୁ ଖୋଲି ମୁଁ ପଢ଼ିବାକୁ ଲାଗିଲି—

କୁମାରରେ,

ଗଳ୍ପ ନେବାକୁ ଆସି ଏ ଚିଠି ତୁ ପାଇବା ବେଳକୁ ମୁଁ ହୁଏତ ଏ ପୃଥିବୀରେ ଆଉ ନ ଥିବି । କିନ୍ତୁ ବିଦାୟ ପୂର୍ବରୁ ଅନ୍ତତଃ ତୋତେତ କିଛି ମନକଥା ଜଣାଇ ଯାଇ ହେବ ! ତୋ ଘରୁ ଫେରି ଏଠାରେ ପହଞ୍ଚି ଦେଖିଲି, ଘର ମୋର ନିର୍ଜନ ନିଶୂନ । ଅଳକାର ଦର୍ଶନ ନାହିଁ । ଭାବିଲି ଏକା ଏକା ବୋର ହୋଇ ହୁଏତ ପଡ଼ିଶା ଘରକୁ ବୁଲି ଯାଇଥିବ । ତାକୁ ଅପେକ୍ଷା କରି ବିଛଣାରେ ଗଡ଼ି ପଡ଼ୁ ପଡ଼ୁ ଦେଖିଲି, ଶେଜ ଉପରେ ତାର ହସ୍ତାକ୍ଷରରେ ମୋ ନାମରେ ଏକ ଚିଠି, ପଢ଼ି ଜାଣିଲି, ତୋଅନୁରୋଧରେ ସେଇ ଅପରିଚିତାକୁ ନେଇ ଗତ କାଲି ଘଡ଼ିରେ ମୁଁ ଯେଉଁ ଗଳ୍ପ ଲେଖିବା ଆରମ୍ଭ କରିଥିଲି, ତାର ସେଇ ଅସମାପ୍ତ ଅଂଶକୁ ପଢ଼ି ସତ୍ୟ ମଣି ଅଳକା ମୋର ଈର୍ଷାର ନୀଳ ବହ୍ନିରେ ଜଳି ଜଳି ବିକୃତ ମସ୍ତିଷ୍କ ପାଲଟି ଯାଇଛି । ମୋ ଭଳି ଦୁଷ୍ଚରି-ତ୍ରର ପତ୍ନୀ ହୋଇ ଆଉ ମୁହୂର୍ତ୍ତେ ମାତ୍ର ବଂଚିବାକୁ ଅସହ୍ୟ ମଣି, ମାଡ୍ରାସ ଏକ୍ସପ୍ରେସର ଚକ ଅର୍ଗଳୀ ତଳେ ନିଜକୁ ବଳୀ ଦେବାକୁ ଘର ଛାଡ଼ି ଚାଲି ଯାଇଛି । କୁମାରବେ, ତୋ ଘରୁ ଫେରିବା ରାସ୍ତାରେ ତ ମୁଁ ଦେଖି-

ଆସିଥିଲି ମାତ୍ରାସ ଏକ୍‌ସପ୍ରେସକୁ । ସିଦ୍‌ଖୋର ଅଭିମାନିନୀ ଅଳକା ମୋର ଆଉ କ'ଣ ଭାବିତା ଥିବ ଏ ପୃଥିବୀରେ ।

କୁମାର, ତୁ ଜାଣୁ, ଆମେ ବିବାହ ପୂର୍ବରୁ ସହସ୍ରାଧିକ ବାର ଶପଥ କରିଥିଲୁ—ଆମ ଦାଂପତ୍ୟ ଜୀବନକୁ କରିବାକୁ ସର୍ବୋତଭାବେ ସରସ, ସୁନ୍ଦର ଏବଂ ପ୍ରୀତି ବିଭୋର । ମୁହୂର୍ତ୍ତକ ପାଇଁ ମଧ୍ୟ ଆମ ଭିତରେ ମନାନ୍ତର ବା ଭୁଲ୍ ବୁଝାମଣାର ବିଷାକ୍ତ ଜୀବାଣୁକୁ ଅନୁପ୍ରବେଶ କରାଇ ନଦେବାକୁ ଆମେ ଖୁବ୍ ସତର୍କ ରହିବାକୁ ନିଷ୍ପତ୍ତି ନେଇଥିଲୁ । ଅଧିକାଂଶ ପ୍ରେମ ବିବାହ ବ୍ୟର୍ଥ ହୋଇଥିବା ସ୍ଥଳେ; ଆମ ବିବାହକୁ ପରିଣତ କରିବାକୁ ଚାହିଁଥିଲୁ ଆମେ ଏକ ଆଦର୍ଶ ବିବାହରେ କିନ୍ତୁ ଆଜି ଏ କ'ଣ ହେଲା ? କି ଉତ୍ତର ଦେବି ମୁଁ, ଆଜି ଏ ସମାଲୋଚନାପ୍ରିୟ ସମାଜକୁ ? ଅଳକାର ସଂସ୍ଥମୀ ପିତା ମାତାଙ୍କୁ ? କେଉଁ ଦମ୍ଭ ନେଇ ମୁଁ ବାଟ ଚାଲିବି ଏ ରାଜ ରାସ୍ତାରେ ? ତେଣୁ ମୁଁ ମର୍ମେ ମର୍ମେ ଅନୁଭବ କରୁଛି, ଏ ପୃଥିବୀରେ ବଂଚିବାର ନିମ୍ନତମ ଆବଶ୍ୟକତା ଆଉ ମୋର ନାହିଁ ।

କୁମାର, ତୁ ନିଶ୍ଚୟ ଭାବୁଥିବୁ, ଆତ୍ମହତ୍ୟାର ଅନେକ ସହଜ ପଥ ଥାଉଁ ଥାଉଁ ମୁଁ ଏମିତି ଏକ ଜଂଘନ୍ୟ ପଥ ବାଛି ନେଲି କାହିଁକି ? ଭାବି ପାରୁଛୁ ତୁ—ଅଳକାର ଶଂଖ ଶୁଭ୍ର ଗ୍ରୀବା ଉପରେ ନିଷ୍ଠୁର ରେଳ ଚକା ଗୁଡ଼ାକ ଶୋଭାଯାତ୍ରା ସୃଷ୍ଟି ଚାଲିଗଲାବେଳେ ପ୍ରେୟସୀ ମୋର କେମିତି ଯନ୍ତ୍ରଣାରେ ଛଟପଟ ହେଉଥିବ ? ରକ୍ତର ସ୍ରୋତରେ କେମିତି ଉଛୁଳି ଉଠିଥିବ ତା' ଚତୁପାର୍ଶ୍ୱର ଧୂସର ଭୂଇଁ ମୋର ତ ପୁଣି ଅନୁରୂପ ଅବସ୍ଥା ଆବଶ୍ୟକ । ଦୁଃଖ ଏତିକି ଯେ, ଜୀବିତା ଅବସ୍ଥାରେ ଜାଣି ପାରିଲାନି ଯାହା ସେ ପ୍ରକୃତ ସତ୍ୟକୁ ।

କୁମାରରେ, ମୃତ୍ୟୁ ପୂର୍ବରୁ ତୋତେ ମୋର ଗୋଟିଏ ଅନୁରୋଧ— ସହସ୍ରବାର 'ପ୍ରତାରକ' ପଦ ଶୁଣିବୁ ପଛେ କିନ୍ତୁ କେବେ ତୁ କେଉଁ ପ୍ରିୟାକୁ ଛାୟା ପଟାଇବୁନି, କାରଣ ସବୁ ପ୍ରଣୟନୀ ଗୋଟାଏ ଗୋଟାଏ ସଂଦେହ ଏବଂ ନୀଳଈର୍ଷାର ମୂର୍ତ୍ତିମତୀ ଈଶ୍ୱରୀ । ତାଙ୍କର ପତି ପ୍ରେମିକମାନଙ୍କର ଅନ୍ୟ ନାରୀଙ୍କ ସହ ଥିବା ଯେ କୌଣସି ସ୍ତରର ସଂପର୍କକୁ ସେମାନେ କେବଳ ନିଜ ସଂପର୍କର ନିକିତିରେହିଁ ତଉଲନ୍ତି ଏବଂ ଥରେ ସେମାନଙ୍କ ମନରେ ସଂଦେହର ଜୀବାଣୁ ଅନୁପ୍ରବେଶ କରିଗଲେ, ସେମାନେ ଯେ କୌଣସି

ପ୍ରକାର ଅସଂଭବ କାର୍ଯ୍ୟ କରିବାକୁ ବି ପଛାନ୍ତିନି ।.....ଆଉ ଯଦି କେବେ ତୋର ସେଇ ଅପରିଚିତା ଝିଆଲୀ ଝିଅଟି ସହ ଦେଖାହୁଏ, ତାକୁ କହିବୁ, ଜୀବନଟା କେବଳ ମୁଠା ମୁଠା ରଙ୍ଗିନ୍ କଳ୍ପନାର ଫୁଟାଫୁଲ ନୁହେଁ, ଟାଆଁସା ମୁନିଆଁ କଣ୍ଟା ଫୁଲ । ଛବିର ମଣିଷ ଏବଂ ରକ୍ତ ମାଂସର ମଣିଷ ମଧ୍ୟରେ ଯୋଜନ ଯୋଜନର ପାର୍ଥକ୍ୟ । ଏ ଦୁନିଆଁରେ ବଂଚିବାକୁ ହେଲେ କଳ୍ପନା ନୁହେଁ ବାସ୍ତବ ଉପରେହିଁ ଅଧିକ ଗୁରୁତ୍ୱ ଦେବାକୁ ହୁଏ । ତା ବଂଧୁତ୍ୱର ଫୁଟା ଫୁଲକୁ ତୋଳି ନେବାକୁ ଏ ଜନ୍ମରେ ମୋର ଶକ୍ତି ନ ଥିଲେ ବି ମୁଁ ପର ଜନ୍ମ ପାଇଁ ପ୍ରତୀକ୍ଷା କରିବି ।

ବିଦାୟ ବଂଧୁ ବିଦାୟ । ଅଳକାର ସ୍ୱର୍ଗତଃ ଆତ୍ମାକୁ ଭେଟିବାକୁ ମୋ ପାର୍ଥିବ ଆତ୍ମାଟା ଯେ ଛଟପଟ ହେଲୁଣି ।

ତୋର—ସମରେଶ ।

ଚିଠିଟାକୁ ଶେଷ କଲା ବେଳକୁ ଅଳକା ପ୍ରତି ମୋ ମନର କୋଣାନୁକୋଣରେ ସୀମାହୀନ ଅସୂୟା ଭରି ଯାଉଥିଲା । ଘୃଣା ଲାଗୁ ଥିଲାବି ସମରେଶର ନାରୀସୁଲଭ ପଳାୟନ-ବାଦୀ ଚିନ୍ତାଧାରା ପାଇଁ । କିନ୍ତୁ ସେମାନଙ୍କୁ ଅନ୍ୟ କାହାର ଘୃଣା ଏବଂ ଉପହାସର ପାତ୍ର ନ କରିବାକୁ ମୁଁ ଦୁଇଟିଯାକ ଚିଠି-ପତ୍ର ସେ ଅସମାପ୍ତ ପାଣ୍ଡୁଲିପିଟିକୁ ନେଇ ପକାଇ ଯିବାକୁ ନିଷ୍ପତ୍ତି ନେଲି । କିନ୍ତୁ ହାୟ ! ତାର ବ୍ୟାକ୍ ଏବଂ ସେଲଫ୍ ଉପର ପାଣ୍ଡୁଲିପିଗୁଡିକୁ ଖୋଳାଇ ଖୋଳାଇ ବି ପାଇ ପାରିଲିନି ମୁଁ ସେଇଟିକୁ । ( ମୁଁ ବା କେମିତି ଜାଣିଥା'ନ୍ତି ଯେ, ସେ ତା ଲେଟର ପ୍ୟାଡ୍‌ଟିରେହିଁ ଆରମ୍ଭ କରିଥିବ ଗପଟିକୁ । ) ଅଧିକ କାଳ ସେଠାରେ ରହିବା ଶୁଭଙ୍କରୀ ନୁହେଁ ଭାବି ମୁଁ ମୃତ ବଂଧୁଟିର ନିର୍ବେଦ ନିସ୍ତେଜ କପାଳରେ ଦୁଇଟି ଅଶ୍ରୁ ସଜଳ ନିବିଡ ଚୁମ୍ବନ ଦେଇ ଦୁହିଁଙ୍କର ଆତ୍ମାର ସଦ୍‌ଗତି ପାଇଁ ଈଶ୍ୱରଙ୍କୁ ଡାକି ଅତି ସନ୍ତର୍ପଣରେ ଗୃହ ତ୍ୟାଗ କଲି ! ମୁଁ ବି ଜାଣିଥିଲି, ଅଳକାର ସେ ଚିଠିଟି ମାତ୍ର ଏକ ଫାଙ୍କା ଧମକ୍ ଥିଲା ବୋଲି ? ଆହା. ବିଚରା, ନିର୍ବୋଧ ସମରେଶ ।

ଯାହେଉ, ଅଳକା ମଧ୍ୟ ଖୋଲି ଦେଇନି ପୋଲିସ୍ ନିକଟରେ ସବୁ କଥା କିନ୍ତୁ ସେ ନିଜେ ବି କ'ଣ ଜାଣି ପାରି ଥିବ ଯେ, ସେଦିନର ସେ ଅର୍ଦ୍ଧ ଲିଖିତ ଚିଠିଟି ସମରେଶର କୌଣସି ରକ୍ତ ମାଂସର ତରୁଣୀ ଉଦ୍ଦେଶ୍ୟରେ

ଲିଖିତ ପ୍ରେମ ପତ୍ର ନୁହେଁ, ମାତ୍ର ତାର ଏକ କଳ୍ପନା ପ୍ରସୂତ ଗଳ୍ପର କିୟଦଂଶ ବୋଲି ? ଇଚ୍ଛା ହୁଏ, ଅନ୍ତତଃ ତାକୁ ହିଁ ସବୁ କଥା ଖୋଲି କହି ଦେବାକୁ କିନ୍ତୁ ପର ମୁହୂର୍ତ୍ତରେ ମନ ଦବିଯାଏ । କାରଣ, ମୁଁ ଜାଣେ, ଏକଥା ଜାଣିବା ପରେ ଅଳକା କେବେ ବଂଚି ପାରିବନି । ଆମୃ ବିଶ୍ୱାସର ସମସ୍ତ ପଥରୁଦ୍ଧ ହୋଇ ଗଲେ, ମଣିଷ କିଛିଟା ମିଥ୍ୟା ଆଶ୍ୱାସ ନେଇ ଅନ୍ତତଃ ବଂଚି ଯାଏ । ସେମିତି ବଂଚି ଯାଉ ବିଚରା ଏଇ ଇର୍ଷାର ଈଶ୍ୱରୀଟି ।

୪

ଠିକ୍ ତାପର ବର୍ଷର ସେଇ ରହସ୍ୟମୟ ଭୌତିକ ନିଶାର୍ଦ୍ଧ....

ଧୂସର ଟାଙ୍ଗର ଭୂଇଁ ଉପରେ ଏକ ଜୀବନ୍ତ କାରୁଣ୍ୟର ଆଲେଖ୍ୟ ପ୍ରାୟ ଶୋଇ ରହିଥିବା ସମରେଶଙ୍କର ସମାଧୀପୀଠ ହଠାତ୍ ଦେଖିଲି ତା ସମ୍ମୁଖରେ ଦଣ୍ଡାୟମାନ ଏକ ଅଲୁଳାୟିତ କେଶା ଶୁଭ୍ରାବସ୍ତ୍ରା କ୍ରନ୍ଦନରତା ନାରୀ । ସୀମନ୍ତରେ ସିନ୍ଦୁର ନାହିଁ, ହାତରେ ନାହିଁ ବି ଶଙ୍ଖା । ପାପୁଲିରେ ସଜ ଫୋଟାଫୁଲର ତୋଡ଼ାଟିଏ ।.... ଖୁବ୍ ପରିଚିତ ମନେ ହେଉଥିଲା ସମାଧି ପୀଠକୁ ସେ ଶୋକଦଗ୍ଧା ମୁହଁଟି । କିନ୍ତୁ ନାରୀଟି ଫୁଲତୋଡ଼ାଟିକୁ ପୀଠ ଉପରେ ରଖିବାକୁ ଉଦ୍ୟତ ହେଲାବେଳେ ପଛରୁ ଶୁଭିଲା ଏକ ଅପରିଚିତ କଣ୍ଠସ୍ୱର—"ଦୟାକରି ସେ କଣ୍ଟକିତ ଫୁଲ ତୋଡ଼ାକୁ ତାଙ୍କ ଛାତି ଉପରେ ରଖନ୍ତୁନି । ତାଙ୍କୁ ଯେ କଷ୍ଟ ହେବ । ଆପଣଙ୍କ ହାତର ଫୁଲ କେବଳ ତାଙ୍କ ଗଳାରେ ହାର ହୋଇ ଝୁଲିବାକୁ ସୃଷ୍ଟି ସିନା କିନ୍ତୁ ତାଙ୍କ ଛାତିରେ ଭାର ହେବାକୁ ନୁହେଁ ।"

ପ୍ରଥମା ନାରୀଟି ସହ ସମାଧିପୀଠ ମଧ୍ୟ ଚମକି ଉଠିଲା ଯେ ସ୍ୱରରେ । ତୁହେଁ ହାତ ଚକିତା ହୋଇ ଦେଖିଲେ; କିଛି ମଲ୍ଲୀ ରଜନୀଗନ୍ଧାର ଶୁଭ୍ର ସତେଜ ଫୁଲ ପଣତରେ ଭରି ଆଗେଇ ଆସୁଛି ଏକ ନାରୀମୂର୍ତ୍ତି । କିନ୍ତୁ ସେ ବଧୂ ନୁହେଁ କି ବିଧବା ନୁହେଁ ବରଂ ଏକ ଊନବିଂଶ ବର୍ଷୀୟା ପ୍ରସ୍ଫୁଟିତ ଯୌବନା କୁମାରୀ କନ୍ୟା । ହାତରେ ଚୁଡ଼ି ମଥାରେ କୁଙ୍କୁମର ଟିପା ଥାଇବି ଯେ ଦିଶୁଥି ପ୍ରଥମା ନାରୀଟିଠାରୁ ଅଧିକ ଶ୍ରୀହୀନା, ଅଧିକ ଶୋକା-କୁଳା । ସାଶ୍ରୁଳ ଚକ୍ଷୁରେ ସେ ସେହି ଫୁଲମାନଙ୍କରେ ସଜାଇ ଦେଲା ସମାଧୀ ପୀଠକୁ । ବିଦଗ୍ଧ ପୀଠଟି ଏଥର ଅଭାବନୀୟ ଭାବେ ଅନୁଭବ କଲା ଏକ ପରିବ୍ୟାପ୍ତ ପ୍ରଶାନ୍ତିର ଶୀତଳତା ।

ପ୍ରଥମା ନାରୀଟି ସହ ସମାଧୀପୀଠର ମନରେ ମଧ୍ୟ ସୀମାହୀନ ବିସ୍ମୟର ଝଡ—କିଏ ଏହି ଅପରିଚିତା ???

ଘର ନଂ ଟାଇପ୍ ୪, ଆର୍ ୧୬୪, ୟୁନିଟ୍ ୬, ଭୁବନେଶ୍ୱର

ସଂପାଦକୀୟ କଲମରୁ—

# ସାହିତ୍ୟ ଓ ସାଂପ୍ରତିକ ସାମାଜିକ ସମସ୍ୟା

ସାହିତ୍ୟ ସାମାଜିକ ସମସ୍ୟାର ପ୍ରତିରୂପ ଭାବରେ କଥିତ ହୋଇ ଆସିଛି । ପ୍ରାଚୀନ ଯୁଗଠାରୁ ଆରମ୍ଭ କରି ଏପର୍ଯ୍ୟନ୍ତ ଏପରି ଉଚ୍ଚକୋଟୀର ସାହିତ୍ୟ ସୃଷ୍ଟି ହୋଇନାହିଁ, ଯାହା ସଂପୂର୍ଣ୍ଣ ରୂପେ ସମାଜକୁ ବାଦ୍ ଦେଇଛି । ବାସ୍ତବତା କୌଣସିଠାରେ କଳ୍ପନାର ପ୍ରାବଲ୍ୟରେ ସତ୍ତା ହରାଇ ନାହିଁ; ବରଂ କଳ୍ପନା ସାହାଯ୍ୟରେ ଅଧିକ ଉଜ୍ଜ୍ୱଳ ଭାବରେ ପରିସ୍ଫୁଟ ହୋଇଛି । ଏଇ ବିଷୟରେ ଅତ୍ୟଧିକ କଳ୍ପନାଶ୍ରିତ ସାହିତ୍ୟରୁ ମଧ୍ୟ ଆଜି ସମାଜ ଚୈତନ୍ୟ ନିର୍ଣ୍ଣୟର ପ୍ରୟାସ କରଯାଉଛି ।

କେହି କେହି ମତ ଦିଅନ୍ତି, କବିତା ଗୋଟିଏ ସୂକ୍ଷ୍ମ କଳା ହୋଇଥିବାରୁ ତା ଭିତରକୁ ସମାଜର ଅନୁପ୍ରବେଶ କ୍ଷତିକାରକ । ତେବେ କବିତା କେବଳ ଗଗନ ବିହାରୀ ହେବ ଏବଂ ତାର କୌଣସି ସାମାଜିକ ଦାୟିତ୍ୱ ରହିବ ନାହିଁ, ଏପରି ଭାବିବା ହିଁ ସାହିତ୍ୟ ପକ୍ଷରେ ସାମଗ୍ରିକ ଭାବରେ କ୍ଷତିକାରକ । ପ୍ରତ୍ୟକ୍ଷ କିମ୍ବା ପରୋକ୍ଷ ଭାବରେ କବିତା ସମାଜଠାରୁ ସଂପୂର୍ଣ୍ଣ ଦୂରେଇ ଯାଇଛି କି ? ବରଂ ବହୁ କବିତା ସମସାମୟିକ ସାମାଜିକ କ୍ରିୟା ପ୍ରତିକ୍ରିୟା ପ୍ରକାଶ କରି ଚିରନ୍ତନତା ଲାଭ କରିବାକୁ ସମର୍ଥ ହୋଇଛି । ନାଟକ ଓ କଥାସାହିତ୍ୟ ତ ସହଜରେ ସମାଜ ସହିତ ନିବିଡ ଭାବରେ ସଂପୃକ୍ତ । ଏଥିରେ ପରିସ୍ଫୁଟ ସମାଜ ଚିତ୍ର ପ୍ରତ୍ୟେକ ଯୁଗରେ ପାଠକମନରେ ନୂତନ ଚିନ୍ତାର ଉଦ୍ରେକ କରାଏ ।

ଆଧୁନିକ ସାହିତ୍ୟ ଦିନକୁ ଦିନ ଅଧିକ ଭାବେ ସମାଜରେ ନିକଟବର୍ତ୍ତୀ ହେବାକୁ ଲାଗିଛି । ସମାଜର ସୂକ୍ଷ୍ମାତିସୂକ୍ଷ୍ମ ଅଭିବ୍ୟକ୍ତିକୁ କଳାତ୍ମକ ଭାବରେ ପ୍ରକାଶ କରିବା ହେଉଛି ଆଧୁନିକ ସାହିତ୍ୟର ଧର୍ମ । ଆଜିର ସାହିତ୍ୟ ବାସ୍ତବାନୁଗ ହୋଇ କଳ୍ପନାର ବନ୍ଧନରୁ ଯଥା ସମ୍ଭବ ମୁକ୍ତ ଲାଭର ପ୍ରୟାସୀ ।

ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ବର୍ତ୍ତମାନ କେତେକ କବିଙ୍କର ବିଶ୍ୱାସ ଯେ କବିତାର ଚିନ୍ତା ଏକ ରୋମାଣ୍ଟିକ୍ ଚିନ୍ତା । ସାମାଜିକ ସମସ୍ୟାକୁ କବିତା ଭିତରେ ଫୁଟାଇବା ସଂଭବ ନୁହେଁ । ଏହାର ସଂସ୍ପର୍ଶରେ ଆସିଲେ କବିତା ତାର କଳାତ୍ମକତା ହରାଇ ବସିବ । ସମସାମୟିକ ସମାଜ ଚେତନା ଅନ୍ୟାନ୍ୟ ସାହିତ୍ୟ ରୂପରେ ପ୍ରତିଫଳିତ ହେବ, କିନ୍ତୁ କବିତାରେ ନୁହେଁ ଏପରି ଧାରଣା ଯୋଗୁଁ ଅଧିକାଂଶ ଓଡ଼ିଆ କବିତା ଏପର୍ଯ୍ୟନ୍ତ ରୋମାଣ୍ଟିକ ଜଗତରୁ ମୁକ୍ତିଲାଭ କରି ପାରିନାହିଁ । ସାରା ବିଶ୍ୱରେ କବିତାରେ ସାଂପ୍ରତିକ ସମାଜର ଅବସ୍ଥା ଫୁଟି ଉଠୁଥିଲା ବେଳେ ଓଡ଼ିଆ କବିତାରେ ତାହା ସଂଭବ ହେଉନାହିଁ । ଅନୁରୂପ ଧାରଣା ମଧ୍ୟ ନାଟକ କ୍ଷେତ୍ରରେ ଦେଖାଦେଇଛି । ଅଧିକାଂଶ ନାଟକରେ ସାମାଜିକ ବିପ୍ଳବର ଚିହ୍ନ ମାତ୍ର ନାହିଁ । ଏକ ସଉଖିୟାଳିଷ୍ଟ ଚିନ୍ତାଧାରା ବହୁ ସମୟରେ ନାଟ୍ୟକାରମାନଙ୍କୁ ଆଚ୍ଛନ୍ନ କରି ରଖୁଛି । ଉଦ୍ଭଟ ନାଟ୍ୟଚେତନା ଆନ୍ତର୍ଜାତିକ ସାହିତ୍ୟ କ୍ଷେତ୍ରରୁ ବିଦାୟ ନେଇଥିଲେ ମଧ୍ୟ କେତେକ ଓଡ଼ିଆ ନାଟ୍ୟକାର ଏହି ଚେତନାକୁ ରୂପାୟିତ କରିବାର ବ୍ୟର୍ଥ-ଚେଷ୍ଟା କରୁଛନ୍ତି । କେତେକ ଭାବନ୍ତି ଯେ, ବିମୂର୍ତ୍ତ ଶୈଳୀରେ ସାମାଜିକ ସମସ୍ୟାକୁ ଧରି ରଖିବା ସଂଭବ ନୁହେଁ । ଏହା ପ୍ରକୃତରେ ଭ୍ରମାତ୍ମକ, ନବୋଦଭୂତ ସମସ୍ୟା ପାଇଁ ନୂତନ ନୂତନ ଶୈଳୀର ଆବଶ୍ୟକତା ଅପରିହାର୍ଯ୍ୟ,କିନ୍ତୁ ନୂତନ ଶୈଳୀରେ ସାଂପ୍ରତିକ ସମସ୍ୟା ଗୁଡ଼ିକ ଯେ ଅଧିକ ପ୍ରଭାବଶାଳୀ ଭାବରେ ପରିସ୍ଫୁଟ ହୋଇପାରିବ ଏଥିରେ ସଂଦେହ ନାହିଁ ।

ସାହିତ୍ୟ କ୍ଷେତ୍ରରେ ସାଂପ୍ରତିକ ସମସ୍ୟାର ପ୍ରଭାବକୁ ଏଡ଼ାଇ ଦେଇ ହେବନାହିଁ । ସାହିତ୍ୟରୁ ସାଂପ୍ରତିକତାକୁ ବାଦ ଦେବା ଅର୍ଥ ନୂତନ ରୁଚି ଓ ଯୁଗୀୟ ଅଭିମୁଖ୍ୟକୁ ନିର୍ବାସନ କରିବା, ଯୁଗୀୟ ଅଭିମୁଖ୍ୟର କଳାତ୍ମକ ଅଭିବ୍ୟକ୍ତି ସର୍ବକାଳୀନତା ଲାଭ କରିବାକୁ ସମର୍ଥ । ମୌଳିକ ସମସ୍ୟା-ଗୁଡ଼ିକ ପ୍ରାଚୀନ କାଳରୁ ଆରମ୍ଭ କରି ଆଧୁନିକ କାଳ ପର୍ଯ୍ୟନ୍ତ ଅପରିବର୍ତ୍ତିତ ଭାବେ ସମସ୍ତ ସାହିତ୍ୟରେ ରୂପାୟିତ ହୋଇଆସିଛି । କେବଳ ମାତ୍ର ବିଚ୍ଛିନ୍ନ ଉପ-ସମସ୍ୟା ଓ ପରିବେଶର ପରିବର୍ତ୍ତନ ବା ରୂପାନ୍ତର ଘଟିଛି, ଏହାକୁ ଭଲ ଭାବରେ ଲକ୍ଷ୍ୟ କରିବାକୁ ପଡ଼ିବ । ସମସାମୟିକ ସମସ୍ୟାର ରୂପାୟନ ବ୍ୟତିରେକ ସାହିତ୍ୟର ପ୍ରାଣବତ୍ତା ଲୋପ ପାଇବ; ସାହିତ୍ୟର ଅଗ୍ରଗତି ବ୍ୟାହତ ହେବ । ଏ ସଂପର୍କରେ ଆଧୁନିକ ଓଡ଼ିଆ ଲେଖକ ମାନଙ୍କ ମଧ୍ୟରେ ସଚେତନତା ସୃଷ୍ଟି ହେବା ଉଚିତ ।

ଶାନ୍ତିନିକେତନ                                  **ନୀଳାଦ୍ରି ଭୂଷଣ ହରିଚନ୍ଦନ**

ତା ୧୧ । ୭ । ୮୨

.....ମୋ ଦୃଷ୍ଟିରେ.....

# "ସମ୍ରାଟ ଓ ଅଧମାନେ"
# ପଢ଼ିବା ପରେ...........

ମାନ୍ଧାତା ବଳଭଦ୍ର ସ୍ୱୟଗୁରୁ ହାରିଗଲେ । ଜିତିଗଲେ ପ୍ରିୟଦର୍ଶନା..... .....

ଏବେ ଗୋଟାଏ ଝଡ଼ ବହିଗଲା । ଈର୍ଷାର, ଅସୂୟା ଭାବରେ, ବେଦନାର ପରାଜୟର ଗ୍ଲାନି ପାଇଁ ଏଇ ଝଡ଼ ଯେମିତି ସୃଷ୍ଟି ହେଲା, ସେମିତି ଥମିଗଲା । ବିଶ୍ୱ ସାହିତ୍ୟର ସମାଲୋଚନା ଦିଗନ୍ତରେ ଏଭଳି ଝଡ଼ ନୂଆ ନୁହେଁ । କିନ୍ତୁ ଓଡ଼ିଆ ସାହିତ୍ୟରେ ସମାଲୋଚନାର ଦିଗ ଓ ଦିଗନ୍ତ ଭିନ୍ନ । ଏଠି ଭାବାବେଗର ପ୍ରାଧାନ୍ୟ ବେଶୀ-କାରଣ ଏବେ ବି ଓଡ଼ିଶାର ସମାଜ ସାମନ୍ତବାଦୀ ମନୋଭାବ ତ୍ୟାଗ କରି ପାରି ନାହିଁ । ଏଠି ଜଣା ଶୁଣା, ଚିହ୍ନା ପରିଚୟ, ଜାତୀ କୁଟୁମ୍ବ ଆଦିର ସଂଜ୍ଞା ସମାଲୋଚନାକୁ ନିମ୍ନ ସ୍ତରରେ ରଖି ଆସିଛି । ପୁଣି ସମାଜର ଅନ୍ୟାନ୍ୟ ପ୍ରକ୍ରିୟା ଭଳି "ସାହିତ୍ୟ"ର ମୂଲ୍ୟାୟନ ମଧ୍ୟ "ଜାତିଆଣ" ମନୋଭାବକୁ ନିର୍ଲଜ ଭାବରେ ପ୍ରକଟିତ କରିବାରୁ ବିମୁଖ ହୋଇନାହିଁ ।

ତେଣୁ " ସେ କିଛି କହିଲେ ନାହିଁ "। କିନ୍ତୁ ପିଲାମାନେ କହିଗଲେ " ଆପଣ ମୂଳରୁ ରାଜା ହୋଇ ଆସିଛନ୍ତି........ଏଥର ଆମେ ଛାଡ଼ିବୁ ନାହିଁ । ଲୋକେ ଶେଷରେ ବୁଝିପାରିଲେ ଯେ "ଏଭଳି ଅସମାନ୍ୟ ପ୍ରତିଭା ଏ ଦେଶରେ ଆଉ ନାହିଁ" ।

ଗତ କେତେବର୍ଷ ତଳେ ଚନ୍ଦ୍ରଶେଖର ରଥ ମହାଶୟ ମୋ ବସାକୁ ଆସିଥିଲେ—ମୋର ଏକ ଭୁଲ ଦର୍ଶାଇ ଦବାପାଇଁ । ସେତେବେଳେ ମୁଁ "ସମାବେଶ"ର ସମ୍ପାଦନା କରୁଥିଲି । ଭୁଲରେ ତାଙ୍କ "ରମ୍ୟରଚନା"ଟି ସୂଚୀରେ "ଗଳ୍ପ" ବୋଲି ଉଲ୍ଲେଖ କରଯାଇଥିଲା । ତେଣୁ ସ୍ୱାଭାବିକ ଧାଡିରେ ସେ ମତେ ଏଥିପାଇଁ ଦୋଷୀ ସାବ୍ୟସ୍ତ କରିଥିଲେ । ଏବେ ସ୍ୱାଭାବିକ

ପ୍ରକ୍ରିୟାରେ ସେ "ସାରଳା-ସମ୍ମାନ"ର ସ୍ୱୀକୃତି ପାଇଛନ୍ତି । ମୁଁ ତାଙ୍କୁ ସୂଚନାଭବନଠାରେ ସର୍ବସମକ୍ଷରେ "ଆଲିଙ୍ଗନ" ଦ୍ୱାରା ଅଭିନନ୍ଦନ ଜଣାଇ ଥିଲି । କାରଣ ସମସ୍ତେ ଖୋଜନ୍ତି "ସମ୍ରାଟ"ଙ୍କୁ ।

ଏବେ ଯେଉଁ ଘଟଣାଗୁଡ଼ିକ ଘଟିଲା, ସେଥିରେ ମୁଁ ବିବ୍ରତ ହୋଇନାହିଁ, ବ୍ୟଗ୍ରତା ପ୍ରକାଶ କରିନାହିଁ—କାରଣ ଯେଉଁ ବିଚାରକମଣ୍ଡଳୀ ସୁରେନ୍ଦ୍ର ମହାନ୍ତିଙ୍କୁ, ମନୋଜ ଦାସଙ୍କୁ "ସାରଳା-ସମ୍ମାନ" ଦେଇଥିଲେ ସେଇମାନେହିଁ ଚନ୍ଦ୍ରଶେଖର ରଥଙ୍କୁ ସେଇ ସମ୍ମାନ ଦେଲେ । ଏହା ବିଚାରକ ମଣ୍ଡଳୀର ବିଚାର ବା ନ୍ୟାୟ ବା ମୂଲ୍ୟାୟନ । ଏ ମୂଲ୍ୟାୟନ ବିରୁଦ୍ଧରେ ଯେଉଁମାନେ ଅନ୍ୟାୟରେ ସ୍ୱର ଉତ୍ତୋଳନ କରିଛନ୍ତି ସେମାନେ ଏବେ ଶାନ୍ତ । କାରଣ ବିକାଶଶୀଳ ରାଷ୍ଟ୍ରରେ ସାମନ୍ତବାଦୀ ଥାଟ ପ୍ରତି ମୋହ ସହଜରେ ତୁଟିପାରେ ନାହିଁ ।

"ସାରଳାସମ୍ମାନ" ବିରୁଦ୍ଧରେ କୌଣସି ଉଚ୍ଚତର ଅଦାଲତରେ ଭିନ୍ନ ବିଚାର ଦେବାର ବ୍ୟବସ୍ଥା ନାହିଁ । ଇଣ୍ଡିଆନ ମେଟାଲ୍ସ ଚ୍ୟାରିଟେବଲ ଟ୍ରଷ୍ଟ ଏଥିପାଇଁ ଧନ୍ୟବାଦର ପାତ୍ର ଯେ ସେମାନେ ଓଡ଼ିଶାର ସାହିତ୍ୟିକ ପରମ୍ପରାରେ ଏକ "ଉଚ୍ଚ ସମ୍ମାନ" ସୃଷ୍ଟି ପାଇଁ ବ୍ୟବସ୍ଥା ଗ୍ରହଣ କରିଛନ୍ତି । ସେହି ପରଂପରାର ମୂଲ୍ୟାୟନରେ ସୁରେନ୍ଦ୍ର ମହାନ୍ତି, ମନୋଜ ଦାସ ଓ ଏବେ ଚନ୍ଦ୍ରଶେଖର ରଥ ସ୍ୱୀକୃତି ପାଇଛନ୍ତି ।

ଗଣତନ୍ତ୍ରର ଚେର ଏବେ ବି ଓଡ଼ିଶାରେ ସୁଦୃଢ଼ ହୋଇନାହିଁ । ସୁଦୃଢ଼ ହେବାତ ଦୂରର କଥା ଚେର ମାଟି ତଳକୁ ବି ପ୍ରବେଶ କରି ପାରି ନାହିଁ ।..... ବ୍ୟକ୍ତିଗତ ଭାବରେ ଚନ୍ଦ୍ରଶେଖର ରଥଙ୍କର ଭାବ ଜଗତର ଦିଗନ୍ତ ସହିତ ମୁଁ ପରିଚିତ । କିନ୍ତୁ ସେ ପରିଚିତି "ସମ୍ରାଟ ଓ ଅନ୍ୟମାନେ" ପଢ଼ିବା ପାଇଁ ମତେ ଉତ୍ସାହିତ କରିନାହିଁ । ଖବର କାଗଜୀୟ ସମାଲୋଚନାର ଧାର ହିଁ ମତେ ଏହି ବହିଟି ପଢ଼ିବାପାଇଁ ଅନୁପ୍ରାଣିତ କରିଛି । "ସମ୍ରାଟ ଓ ଅନ୍ୟମାନେ"ରୁ ଖଣ୍ଡିଏ ବହି ଗ୍ରନ୍ଥ ମନ୍ଦିରରୁ କିଣି ମୁଁ ବହୁଦିନ ପାଖରେ ରଖିବା ପରେ, ଏବେ ପଢ଼ି ସାରିଛି ଓ ପଢ଼ି ସାରିବା ପରେ ବିଶ୍ୱାସ କରୁଛି ଯେ ପ୍ରତ୍ୟେକ ଗଳ୍ପ ମଧ୍ୟରେ ସୃଷ୍ଟିଧର୍ମୀ ଚେତନା ଓ ବିନାଶଧର୍ମୀ ସାମାଜିକ ବ୍ୟବସ୍ଥା ଭିତରେ ଥିବା ଦ୍ୱନ୍ଦ୍ୱ ପ୍ରକାଶ ପାଇଛି । ଏଇ ଦ୍ୱନ୍ଦ୍ୱାତ୍ମକ ସାମାଜିକ ଚରିତ୍ର ଗୁଡ଼ିକୁ ଚନ୍ଦ୍ରଶେଖର ରଥ ଆପଣେ ନିଜେ କଲମ ଓ କଲମର ପ୍ରେରଣାରେ ନୂତନ ଭାବରେ ସୃଷ୍ଟି କରିଛନ୍ତି ।

ଯେ କୌଣସି କଳାକାର ପକ୍ଷରେ କେତାର ଆନନ୍ଦାବେଗ ହିଁ ପରକରୟର କାଳିମା ଆଣିଦେବାର ସମ୍ଭାବନା ରହିଛି । କଳାକାର ମଧ୍ୟରେ ମାନସିକ ଶକ୍ତି ଅପେକ୍ଷା ଏକ ବୃହତ୍ତର ଓ ରହସ୍ୟାଚ୍ଛନ୍ନ ପ୍ରତିଭା କାର୍ଯ୍ୟ କରେ । ଏହି ରହସ୍ୟାବୃତ ଶକ୍ତି ହିଁ କଳା ମଧ୍ୟରେ ପ୍ରତିଭାର ଉନ୍ମେଷ ଘଟାଏ । ତା'ର ସୃଷ୍ଟି ହିଁ ତା'ର ପୃଥିବୀ । ତା'ର ସୃଷ୍ଟ କର୍ମ ହିଁ ତା'ର ପ୍ରେମୋଦ୍ଭୂତ ଭାବନ ଓ ସେ କେବେ ବାଗଡ଼ିକ ପରିବେଶ ପରିବେଷ୍ଟନୀର ଇନ୍ଦ୍ରିୟଗ୍ରାହ୍ୟ ସ୍ୱୀକୃତକୁ ଅପେକ୍ଷା କରେ ନାହିଁ । ସୃଷ୍ଟି ଓ ସ୍ରଷ୍ଟା ମଧ୍ୟରେ ଯେଉଁ ନିବିଡ଼ତା ରହିଛି ସେ ଦୃଷ୍ଟିରୁ ବିଗ୍ରହ କଲେ ଚନ୍ଦ୍ରଶେଖର ରଥଙ୍କର ବନ୍ଧୁ, ମହାନ୍ତି, କୁବଜା, ସମ୍ରାଟ ଓଡ଼ିଶା ସମାଜର ଜନ ଜୀବନର ସାର୍ଥକ ପ୍ରତିନିଧି । ଭାଷା, ଶୈଳୀ ଓ ଶବ୍ଦ ନିର୍ବାଚନ କରିଆରେ ଏହି ନିତି ଦିନିଆ ଚରିତ୍ର ଗୁଡ଼ିକୁ ଚନ୍ଦ୍ରଶେଖର ରଥ ଜୀବନ୍ୟାସ ଦେଇଛନ୍ତି । ସେଥିପାଇଁ ପ୍ରଫେସର ଶାସ୍ତ୍ରୀ ଓରଫ ଶଙ୍କର ଦାସ ମଣିଷ ହୋଇ ବି ଦେବତା ଆଉ ଉପାଧ୍ୟକ୍ଷ ଚନ୍ଦ୍ରଶେଖର ରଥ ସାଉଳାସମ୍ମାନ ପ୍ରାପ୍ତ ନୀଳକଣ୍ଠ ।

" ସମ୍ରାଟ ଓ ଅନ୍ୟମାନେ " ଓଡ଼ିଆ ଗଳ୍ପ ସାହିତ୍ୟ ପରଂପରାରେ ଏକ ଅନବଦ୍ୟ ସଂକଳନ—ଅନ୍ତତଃ ମୋ ଦୃଷ୍ଟିରେ ଅନ୍ୟମାନଙ୍କ କଥା ମୁଁ କହି ପାରିବିନି ।

ତା ୨୦ । ୧୦ , ୮୨ **ଭାଗବତ୍ରାହୀ ମିଶ୍ର**

Printed and published at SUMUDRANI, Jhanjirimangala, Cuttack-9 by Pradyumna Bal for Pragativadi Publications, 136, Bapuji Nagar, Bhubaneswar-9